

**ଅମାତ୍ରଶ୍ଚତୁର୍ଥୋଽବ୍ୟବହାର୍ଯ୍ୟଃ ପ୍ରପଞ୍ଚୋପଶମ ଶିବୋଽଦ୍ୱୈତ**
**ଏବମୋଙ୍କାର ଆତ୍ମୈବ ସଂବିଶତ୍ୟାତ୍ମନାଽଽତ୍ମାନଂ**
**ଯ ଏବଂ ବେଦ ଯ ଏବଂ ବେଦ।।**

ଏହି ଭଳି ମାତ୍ରାରହିତ ପ୍ରଣବ ହିଁ ବ୍ୟବହାରରେ ନ ଆସୁଥିବା ପ୍ରପଞ୍ଚଠାରୁ ଅତୀତ, କଲ୍ୟାଣମୟ, ଅଦ୍ୱିତୀୟ, ପୂର୍ଣ୍ଣ ବ୍ରହ୍ମର ଚତୁର୍ଥ ପାଦ ଅଟନ୍ତି । ସେହି ଆତ୍ମା ଅବଶ୍ୟ ଆତ୍ମା ଦ୍ୱାରା ପରାତ୍ପର ବ୍ରହ୍ମ ପରମାତ୍ମାରେ ପୂର୍ଣ୍ଣତୟା ପ୍ରବିଷ୍ଟ ହୋଇ ଯାଇଥାନ୍ତି । ଯିଏ ଏହି ପ୍ରକାରେ ଜାଣନ୍ତି ସେ ନିର୍ଦ୍ଦିଷ୍ଟ ଭାବରେ ଠିକ୍ ହିଁ ଜାଣନ୍ତି । ସେ ପ୍ରକୃତ ଅବଗତ ହୋଇଥାନ୍ତି ।



# ପ୍ରାକ୍‌କଥନ

ଏହି ଉପନିଷଦଟି ବେଦାନ୍ତର ବୀଜ ସଦୃଶ । ଉପନିଷଦଗୁଡ଼ିକ ମଧ୍ୟରେ ଅଧିକ ଜ୍ଞାନଗର୍ଭକ ଓ ପ୍ରଧାନତମ ହୋଇଥିବାରୁ ମୁମୁକ୍ଷୁ ସାଧକମାନେ ଏହାକୁ ଅଧିକମାତ୍ରାରେ ଅଧ୍ୟୟନ ଓ ଅନୁଶୀଳନ କରିଥାନ୍ତି । ଏହି ଉପନିଷଦଟି ମାତ୍ର ବାରଗୋଟି ମନ୍ତ୍ରରେ ଗଢ଼ା ! ସେଗୁଡ଼ିକ ପୁଣି ଆଗମ, ବୈତଥ୍ୟ, ଅଦ୍ୱୈତ ଏବଂ ଅଲାତଶାନ୍ତି ନାମରେ ଚାରିଭାଗରେ ବିଭକ୍ତ । ମୁକ୍ତିର ଚାବିକାଠି ଭାବରେ ପ୍ରଣବର ବର୍ଣ୍ଣନା ଆଗମ ପ୍ରକରଣରେ ହୋଇଛି । ଦ୍ୱିତୀୟ ପ୍ରକରଣରେ ମୁକ୍ତିର ଗୋଟିଏ ବାଧକ ଦ୍ୱୈତ-ତତ୍ତ୍ୱର ଆଲୋଚନା କରାଯାଇ ଏହାକୁ ଅସ୍ୱୀକାର କରାଯାଇଛି । ତୃତୀୟ ପ୍ରକରଣରେ ଅଦ୍ୱୈତ ତତ୍ତ୍ୱର ଅବତାରଣା ଓ ବିଚାର କରାଯାଇଛି । ଶେଷ ଅର୍ଥାତ୍ ଚତୁର୍ଥ ପ୍ରକରଣଟିରେ କେତୋଟି ପରସ୍ପର ବିରୋଧୀ ଅବୈଦିକ ତତ୍ତ୍ୱ ବିଶ୍ଳେଷଣ କରାଯାଇ ସେଗୁଡ଼ିକ ତ୍ୟାଗ କରାଯାଇଛି ।



# ।। ଶାନ୍ତିପାଠ ।।

ଓଁ ଭଦ୍ରଂ କର୍ଣ୍ଣେଭିଃ ଶୃଣୁୟାମ ଦେବା,
ଭଦ୍ରଂ ପଶ୍ୟେମାକ୍ଷଭିର୍ଯଜତ୍ରାଃ ।
ସ୍ଥିରୈରଙ୍ଗୈ ସ୍ତୁଷ୍ଟୁବାଁସସ୍ତନୂ ଭିର୍ବ୍ୟଶେମ
ଦେବହିତଂ ଦଦାୟୁଃ ।।

ସ୍ୱସ୍ତି ନ ଇନ୍ଦ୍ରୋ ବୃଦ୍ଧଶ୍ରବାଃ
ସ୍ୱସ୍ତି ନଃ ପୂଷା ବିଶ୍ୱବେଦାଃ ।
ସ୍ୱସ୍ତି ନସ୍ତାର୍କ୍ଷ୍ୟୋ ଅରିଷ୍ଟନେମିଃ
ସ୍ୱସ୍ତି ନୋ ବୃହସ୍ପତିର୍ଦ୍ଦଧାତୁ ।।

ଓଁ ଶାନ୍ତିଃ ! ଶାନ୍ତିଃ ! ଶାନ୍ତିଃ !!!

**ମନ୍ତ୍ରାର୍ଥ :** ହେ ଦେବଗଣ ! ଆମେ ଭଗବାନଙ୍କ ଆରାଧନାକରି କାନରେ କଲ୍ୟାଣମୟ ବଚ଼ନଶୁଣି, ନେତ୍ର ସାହାଯ୍ୟରେ କଲ୍ୟାଣ ଦର୍ଶନପୂର୍ବକ, ସୁଦୃଢ଼ ଅଙ୍ଗ/ଶରୀରଦ୍ୱାରା ଭଗବାନଙ୍କ ସ୍ତୁତିକରି ଯେଉଁ ଆୟୁ ଲାଭକରିବୁ, ତାହା ଆରାଧଦେବ ପରମାତ୍ମାଙ୍କ କାମରେ ଆସିପାରିବ: ତେଣୁ ତାକୁ ହିଁ ଉପଭୋଗ କରିବୁ । ସର୍ବତ୍ର ପ୍ରଚ଼ାରିତ ଯଶବାନ ଇନ୍ଦ୍ର ଆମପାଇଁ କଲ୍ୟାଣ ପୋଷଣ କରନ୍ତୁ । ଅରିଷ୍ଟ ଦୂରକାରୀ ଚ଼କ୍ରସଦୃଶ ଶକ୍ତିଶାଳୀ ଗରୁଡ ଆମପାଇଁ କଲ୍ୟାଣ ପୋଷଣକରନ୍ତୁ । ହେ ପରମାତ୍ମନ୍ ! ଆମର ତ୍ରିବିଧ ତାପ ଶାନ୍ତି ହେଉ ।।

**ସାମାନ୍ୟ ବ୍ୟାଖ୍ୟା–** ଗୁରୁଙ୍କ ନିକଟରେ ଅଧ୍ୟୟନରତ ଶିଷ୍ୟ ନିଜର ଗୁରୁ, ସହପାଠୀ ତଥା ମାନବସମାଜର କଲ୍ୟାଣ ଚ଼ିନ୍ତନକରି ଦେବତାଙ୍କ ନିକଟରେ ପ୍ରାର୍ଥନା କରନ୍ତି–''ହେ ଦେବଗଣ ! ଆମେ ଆମ କାନ ସାହାଯ୍ୟରେ ଶୁଭ କଲ୍ୟାଣକାରୀ ବଚ଼ନ ହିଁ ଶୁଣୁ । ନିନ୍ଦା, ଚ଼ିଗୁଲି, ଗାଳି ଅଥବା ଅନ୍ୟ ପାପ କଥା କାନରେ ନ ପଡୁ, ଆମ ଜୀବନ ସର୍ବଦା ଯଜନ ପରାୟଣ ହେଉ– ଆମେ ସର୍ବଦା ଭଗବାନଙ୍କ ଆରାଧନାରେ ଲାଗିରହୁ । କେବଳ କାନରେ ଶୁଣିବା ନୁହେଁ ନେତ୍ର ସାହାଯ୍ୟରେ

ସର୍ବଦା କଲ୍ୟାଣ ମଧ୍ୟ ଦର୍ଶନ କରୁ । କୌଣସି ଅମଙ୍ଗଳକାରୀ ଅଥବା ପତନାଭିମୁଖୀ ଦୃଶ୍ୟ ଆଡକୁ ଆମ ଦୃଷ୍ଟି ଆକର୍ଷିତ ନହେଉ । ଆମ ଶରୀର ତଥା ପ୍ରତ୍ୟେକ ଅବୟବ ସୁଦୃଢ ଏବଂ ସୁପୁଷ୍ଟ ହେଉ । ଏଇଥିପାଇଁ କି, ତଦ୍ୱାରା ଭଗବାନଙ୍କ ସ୍ତବ, ସ୍ତୁତି ଆଦି ଆମେ ଅନାୟାସରେ କରିପାରିବୁ । ଆମର ଆୟୁ ଭୋଗବିଳାସ ଅଥବା ପ୍ରମାଦରେ ନକଟୁ, ଆମକୁ ଏପରି ଆୟୁ ପ୍ରାପ୍ତହେଉ ଯାହାକି ଭଗବାନଙ୍କ କାମରେ ଲାଗିପାରିବ । (ଦେବତାଗଣ ଆମର ପ୍ରତ୍ୟେକ ଇନ୍ଦ୍ରିୟରେ ବ୍ୟାପ୍ତରହି ତାର ସଂରକ୍ଷଣ ଓ ସଞ୍ଚାଳନ କରନ୍ତୁ । ତାହା ଅନୁକୂଳ ରହିବା ଦ୍ୱାରା ଆମ ଇନ୍ଦ୍ରିୟଗଣ ସତ୍‌ମାର୍ଗରେ ସୁଗମତାପୂର୍ବକ କର୍ମରେ ଲିପ୍ତ ରହିପାରିବେ । ତେଣୁ ତାଙ୍କୁ ପ୍ରାର୍ଥନା କରିବା ଉଚିତ ।) ଯାହାଙ୍କ ସୁଯଶ ସର୍ବତ୍ର ପ୍ରଚାରିତ, ସେହି ଦେବରାଜ ଇନ୍ଦ୍ର, ସର୍ବଜ୍ଞ ପୂଷା, ଅରିଷ୍ଟ ନିବାରକ ତାର୍କ୍ଷ୍ୟ (ଗରୁଡ) ଓ ବୁଦ୍ଧିସ୍ୱାମୀ ବୃହସ୍ପତି–ଏମାନେ ସମସ୍ତେ ଭଗବାନଙ୍କ ଦିବ୍ୟ ବିଭୂତି ଅଟନ୍ତି । ଏମାନେ ମଧ୍ୟ ଆମର କଲ୍ୟାଣ ପୋଷଣକରନ୍ତୁ । ତାଙ୍କ କୃପାରୁ ଆମ ସହିତ ପ୍ରାଣୀ ମାତ୍ରର (ସକଳ ପ୍ରାଣୀଙ୍କର) କଲ୍ୟାଣ ପ୍ରାପ୍ତିହେଉ ।

ଅଧ୍ୟାତ୍ମିକ, ଅଧିଦୈବିକ ଓ ଅଧିଭୌତିକ ସମସ୍ତ ପ୍ରକାର ତାପ ଶାନ୍ତି ହେଉ– ଅର୍ଥାତ୍ ତାପତ୍ରୟ ଶାନ୍ତି ହୁଅନ୍ତୁ ।। ଓମ୍ ।।



# ।। ଉପନିଷଦ-ମନ୍ତ୍ର ।।

**ଓମିତ୍ୟେତଦକ୍ଷରମିଦ୍ଁ ସର୍ବଂ ତସ୍ୟୋପବ୍ୟାଖ୍ୟାନଂ**
**ଭୂତଂ ଭବଦ୍‌ଭବିଷ୍ୟଦିତି ସର୍ବମୋଙ୍କାର ଏବ ।**
**ଯଚ୍ଚାନ୍ୟତ୍ ତ୍ରିକାଲାତୀତଂ ତଦପ୍ୟୋଙ୍କାର ଏବ ।।୧।।**

**ମନ୍ତ୍ରାର୍ଥ :** 'ଓଁ' ଅକ୍ଷରଟି ଅବିନାଶୀ ପରମାତ୍ମା ଅଟେ । ଏହି ସମ୍ପୂର୍ଣ୍ଣ ଜଗତ୍ ତାର ଉପବ୍ୟାଖ୍ୟାନ ଅର୍ଥାତ୍ ତାର ନିକଟତମ ମହିମାର ପ୍ରକାଶକାରକ ଭୂତ(ଗତ), ବର୍ତ୍ତମାନ ଓ ଭବିଷ୍ୟତ ଅଟେ । ଏହି ସମସ୍ତ ଜଗତ୍ ଓଁକାରମୟ ଅଟେ । ଯଦି କାଳତ୍ରୟ ବ୍ୟତୀତ ଅନ୍ୟ କିଛି ତତ୍ତ୍ୱ ଥାଏ, ତାହା ମଧ୍ୟ ଓଁକାର ଅଟେ ।

**ସାମାନ୍ୟ ବ୍ୟାଖ୍ୟା–** ଏହି ଉପନିଷଦରେ ପରବ୍ରହ୍ମ ପରମାତ୍ମାଙ୍କ ସମଗ୍ର ରୂପର ତତ୍ତ୍ୱ ବ୍ୟାଖ୍ୟା କରିବା ପାଇଁ ତାଙ୍କର ଚାରି ପାଦର କଳ୍ପନା କରାଯାଇଛି । ନାମ ଓ ନାମୀଙ୍କ ଏକତା ପ୍ରତିପାଦନ କରିବାପାଇଁ ପ୍ରଣବର ଅ, ଉ ଓ ମ– ଏହି ତିନି ମାତ୍ରାଙ୍କ ସହିତ ଓ ମାତ୍ରାରହିତ ତାଙ୍କ ଅବ୍ୟକ୍ତରୂପ ସହିତ ପରବ୍ରହ୍ମ ପରମାତ୍ମାଙ୍କ ନାମ, ଯାହାକି ଓଁକାର ଅଟେ ତାଙ୍କୁ ସମଗ୍ର ପୁରୁଷୋତ୍ତମଙ୍କ ଠାରୁ ଅଭିନ୍ନ ବୋଲି କୁହାଯାଇଛି । – 'ଓମ୍' ଏହି ଅକ୍ଷର ହିଁ ପୂର୍ଣ୍ଣବ୍ରହ୍ମ ଅବିନାଶୀ ପରମାତ୍ମା ଅଟନ୍ତି । ଏହି ପ୍ରତ୍ୟକ୍ଷ ଦୃଶ୍ୟମାନ ହେଉଥିବା ଜଡ ଚେ଼ତନର ସମୁଦାୟ ରୂପ ସମ୍ପୂର୍ଣ୍ଣ ଜଗତ୍ ତାଙ୍କର ଉପବ୍ୟାଖ୍ୟାନ ଅର୍ଥାତ୍ ତାଙ୍କର ନିକଟତମ ମହିମାର ନିଦର୍ଶକ ଅଟନ୍ତି । ଯେଉଁ ସ୍ଥୂଳ ଓ ସୂକ୍ଷ୍ମ ଜଗତ୍ ପ୍ରଥମେ ଉତ୍ପନ୍ନ ହୋଇ ସେଥିରେ ବିଲୀନ ହୋଇଥାଏ ଓ ଯାହା ବର୍ତ୍ତମାନ କାଳରେ ବିଦ୍ୟମାନ ଅଟେ ପୁଣି ତହିଁରୁ ଯାହା ଉତ୍ପନ୍ନ ହୋଇଥାଏ ସେସବୁ ଓଁକାର ହିଁ ଅଟେ, ଅର୍ଥାତ୍ ପରବ୍ରହ୍ମ ପରମାତ୍ମା ହିଁ ଅଟନ୍ତି । ଯାହା ତିନିକାଳର ଅତୀତ, ତାହା ମଧ୍ୟ ଓଁକାର ଅଟେ । କାରଣ, ସୂକ୍ଷ୍ମ ଓ ସ୍ଥୂଳ–ଏହି ତିନି ଭେଦରେ ଜଗତ୍ ଓ ତାହାର ଧାରଣକାରୀ ପରବ୍ରହ୍ମଙ୍କ ଯେଉଁ ଅଂଶ ଆତ୍ମାରୂପେ ଅଭିବ୍ୟକ୍ତ ହୁଏ, ସେଗୁଡ଼ିକ ଉକ୍ତ ପରମାତ୍ମାଙ୍କର ସ୍ୱରୂପ ଭିନ୍ନ ଅନ୍ୟକିଛି । ଅତଃ ତାର ଅଭିବ୍ୟକ୍ତ ଅଂଶ ଓ ତହିଁରୁ ଅତୀତ ଯାହାକିଛି, ସେସବୁ ସେହି ପରବ୍ରହ୍ମ ପରମାତ୍ମାଙ୍କ ସାମଗ୍ରୀକ ରୂପ ।

ଉପରୋକ୍ତ ବ୍ୟାଖ୍ୟାନର ଅଭିପ୍ରାୟ ହେଉଛି, ପରବ୍ରହ୍ମଙ୍କୁ ଯେଉଁମାନେ କେବଳ ସାକାର ମାନନ୍ତି ଅବା ନିରାକାର ମାନନ୍ତି ଅବା ସର୍ବଥା ନିର୍ବିଶେଷ ମାନନ୍ତି– ସେମାନେ ସର୍ବଜ୍ଞାତା, ସର୍ବାଧାରଣ, ସର୍ବକାରଣତା, ସର୍ବେଶ୍ୱରତା, ଆନନ୍ଦ, ବିଜ୍ଞାନ ଆଦି କଲ୍ୟାଣମୟ ଗୁଣରୂପେ ସମ୍ପୂର୍ଣ୍ଣ ରୂପେ ମାନିପାରି ନ ଥାନ୍ତି । ସେମାନେ ସେହି ପରବ୍ରହ୍ମଙ୍କର ଏକ–ଏକ ଅଂଶକୁ ହିଁ ପରମାତ୍ମା ଭାବରେ ମାନନ୍ତି । ପୂର୍ଣ୍ଣବ୍ରହ୍ମ ପରମାତ୍ମା ସାକାର ମଧ୍ୟ ନିରାକାର ମଧ୍ୟ ଅର୍ଥାତ୍ ସାକାର–ନିରାକାର ଉଭୟ ମଧ୍ୟ ଅଟନ୍ତି । ସେ ସର୍ବଗୁଣ ରହିତ ନିର୍ବିଶେଷ ଅଟନ୍ତି ଓ ସର୍ବଗୁଣ ସମ୍ପନ୍ନ ଅଟନ୍ତି । ଏହିଭଳି ମାନିବା ହିଁ ତାଙ୍କୁ ସର୍ବାଙ୍ଗ ବା ପରିପୂର୍ଣ୍ଣ ମାନିବା ହୋଇଥାଏ ।। ୧ ।।

*ସମ୍ବନ୍ଧ : ସବୁକିଛି ଓଁକାର କିଭଳି–*

**ସର୍ବଁ୍ହ୍ୟେତଦ୍ ବ୍ରହ୍ମାୟମାତ୍ମା**
**ବ୍ରହ୍ମ ସୋଽୟମାତ୍ମା ଚ଼ତୁଷ୍ପାତ୍ ।।୨।।**

**ମନ୍ତ୍ରାର୍ଥ :** ଏମାନେ ସମସ୍ତେ ବ୍ରହ୍ମ ହିଁ ଅଟନ୍ତି କାହିଁକି ନାଁ ସେହି ପରମାତ୍ମା ଯିଏ ଏହି ଦୃଶ୍ୟ ଜଗତ୍‌ରେ ପରିପୂର୍ଣ୍ଣ ବ୍ରହ୍ମ ଅଟନ୍ତି, ସେହି ପରମାତ୍ମା ଚ଼ାରି ଚ଼ରଣଯୁକ୍ତ ଅଟନ୍ତି ।।

**ସାମାନ୍ୟ ବ୍ୟାଖ୍ୟା–** ଏହି ସମ୍ପୂର୍ଣ୍ଣ ଜଗତ୍ ବ୍ରହ୍ମ ଭିନ୍ନ ଅନ୍ୟ କିଛି ନୁହେଁ । ସବୁକିଛି ବ୍ରହ୍ମ ଏବଂ ଓଁକାର ଏହାର ନାମ ହୋଇଥିବା କାରଣରୁ ନାମୀଠାରୁ ତାହା ଅଭିନ୍ନ । ଏଣୁ ସବୁକିଛି ଓଁକାର ଅଟେ । ଏହା ପ୍ରଥମ ମନ୍ତ୍ରରେ କୁହାଯାଇଛି । କାରଣ ଏହି ସମ୍ପୂର୍ଣ୍ଣ ଜଗତ୍ ସେହି ପରବ୍ରହ୍ମ ପରମାତ୍ମାଙ୍କ ଶରୀର ଅଟେ ଏବଂ ଏହାର ଅନ୍ତର୍ଯ୍ୟାମୀ– ଆତ୍ମା ଅଟନ୍ତି (ଅନ୍ତର୍ଯ୍ୟାମୀ ବ୍ରାହ୍ମଣ– ବୃ.ଉ–୭/୨୩) । ଏଣୁ ସେହି ସର୍ବାତ୍ମା ହିଁ ବ୍ରହ୍ମ ଅଟନ୍ତି । ସେହି ସର୍ବାତ୍ମା ପରବ୍ରହ୍ମ ଆଗକୁ ବର୍ଣ୍ଣିତ ଅନ୍ୟଖଣ୍ଡରେ ଚ଼ାରିପାଦ ଯୁକ୍ତ ହୋଇଛନ୍ତି । ବାସ୍ତବରେ ସେହି ଅଖଣ୍ଡ ନିରବୟବ ପରବ୍ରହ୍ମ ପରମାତ୍ମାଙ୍କୁ ଚ଼ାରିପାଦ ବୋଲି କେବଳ କହିଲେ ହେବନାହିଁ, ତାଙ୍କର ସମଗ୍ର ରୂପର ବ୍ୟାଖ୍ୟା କରିବାପାଇଁ ତାଙ୍କର ଅଭିବ୍ୟକ୍ତିର ପ୍ରକାର ଭେଦକୁ ନେଇ ଶ୍ରୁତିରେ ସ୍ଥାନେ ସ୍ଥାନେ ତାଙ୍କର ଚ଼ାରିପାଦର କଳ୍ପନା କରାଯାଇଛି, ତେଣୁକରି ଏଠାରେ ମଧ୍ୟ ଶ୍ରୁତି ସେହିଭଳି କହିଛନ୍ତି ।। ୨ ।।

*ସମ୍ବନ୍ଧ : ଅତଃ ଚ଼ାରି ପାଦ କ'ଣ କ'ଣ ?*

**ଜାଗରିତସ୍ଥାନୋ ବହିଷ୍ପ୍ରଜ୍ଞଃ ସପ୍ତାଙ୍ଗ ଏକୋନବିଂଶତିମୁଖଃ**
**ସ୍ଥୂଳଭୁଗ୍‌ବୈଶ୍ୱାନରଃ ପ୍ରଥମ ପାଦଃ ।।୩।।**

**ମନ୍ତ୍ରାର୍ଥ :** ଜାଗ୍ରତ ଅବସ୍ଥା ସଦୃଶ ଏହି ସମ୍ପୂର୍ଣ୍ଣ ସ୍ଥୂଳ ଜଗତ୍ ଯାହାର ସ୍ଥାନ ଅର୍ଥାତ୍ ଯାହାଙ୍କର ଶରୀର ଅଛି, ଯାହାଙ୍କ ଜ୍ଞାନ ଏହି ବାହ୍ୟ ଜଗତ୍‌ରେ ବିସ୍ତୃତ ହୋଇ ରହିଛି, ଭୂଃ, ଭୁବଃ ଆଦି ସପ୍ତଲୋକ ଯାହାଙ୍କ ସପ୍ତଅଙ୍ଗ ଅଟନ୍ତି, ପଞ୍ଚ କର୍ମେନ୍ଦ୍ରିୟ, ପଞ୍ଚ ଜ୍ଞାନେନ୍ଦ୍ରିୟ, ପଞ୍ଚ ପ୍ରାଣ ଓ ଚାରି ଅନ୍ତଃକରଣ – ଏମାନେ ବିଷୟ ଗ୍ରହଣକାରୀ ଊନବିଂଶ ଗୋଟି ସମଷ୍ଟି 'କରଣ' ହିଁ ଯାହାଙ୍କର ଊନବିଂଶମୁଖ, ଯିଏକି ଏହି ସ୍ଥୂଳଜଗତ୍‌ର ଭୋକ୍ତା – ଏ ସବୁକୁ ଅନୁଭବକାରୀ ତଥା ଜ୍ଞାତା ସେହି ବୈଶ୍ୱାନର (ବିଶ୍ୱ ଧାରଣକାରୀ) ପରମେଶ୍ୱରଙ୍କର ପ୍ରଥମ ପାଦ ଅଟନ୍ତି ।

**ସାମାନ୍ୟ ବ୍ୟାଖ୍ୟା–** ପରବ୍ରହ୍ମ ପରମାତ୍ମାଙ୍କର ସେହି ଚାରି ପାଦ କିପରି ତାହା ବୁଝେଇବାକୁ ଯାଇ ଜୀବାତ୍ମା ତଥା ତାହାର ସ୍ଥୂଳ, ସୂକ୍ଷ୍ମ ଓ କାରଣ ଏହି ତିନି ଶରୀରର ଉଦାହରଣ ନେଇ ସେହି ପରମାତ୍ମାଙ୍କ ତିନି ପାଦ କ୍ରମଶଃ ବର୍ଣ୍ଣନା କରାଯାଉଛି ଏବଂ ତନ୍ମଧ୍ୟରୁ ଏଠାରେ ପ୍ରଥମ ପାଦର ବର୍ଣ୍ଣନା କରାଯାଇଛି । ଭାବ ହେଉଛି, ଯେଉଁଭଳି ଜାଗ୍ରତ ଅବସ୍ଥାରେ ଏହି ସ୍ଥୂଳଶରୀର ଅଭିମାନୀ ଜୀବାତ୍ମା ମସ୍ତକରୁ ନେଇ ପାଦ ପର୍ଯ୍ୟନ୍ତ ସାତଅଙ୍ଗଯୁକ୍ତ ହୋଇ ସ୍ଥୂଳ ବିଷୟର ଉପଭୋଗର ଦ୍ୱାରରୂପ ଦଶଇନ୍ଦ୍ରିୟ, ପଞ୍ଚପ୍ରାଣ ଓ ଚତୁଃ ଅନ୍ତଃକରଣ ଭାବରେ ଊନବିଂଶ ମୁଖ ଦ୍ୱାରା ବିଷୟ ଉପଭୋଗ କରିଥାଏ ଓ ତାର ବିଜ୍ଞାନ ବାହ୍ୟ ଜଗତରେ ବିସ୍ତୃତ ହୋଇଥାଏ, ସେହିଭଳି ସପ୍ତଲୋକରୂପ ସପ୍ତଅଙ୍ଗ ଓ ସମଷ୍ଟି ଇନ୍ଦ୍ରିୟ, ପ୍ରାଣ ଓ ଅନ୍ତଃକରଣ, ଏଭଳି ଭାବରେ ଊନବିଂଶ ମୁଖଯୁକ୍ତ ଏହି ସ୍ଥୂଳ ଜଗତ୍‌ରୂପ ଶରୀରର ଆତ୍ମା– ଯିଏକି ସମ୍ପୂର୍ଣ୍ଣ ଦେବତା, ପିତୃ, ମନୁଷ୍ୟ ଆଦି ସମସ୍ତ ପ୍ରାଣୀଗଣଙ୍କ ପ୍ରେରକ ଓ ସ୍ୱାମୀ ହୋଇଥିବା କାରଣରୁ ଏହି ସ୍ଥୂଳ ଜଗତ୍‌ର ଜ୍ଞାତା ଓ ଭୋକ୍ତା ଅଟନ୍ତି । ଯାହାଙ୍କ ଅଭିବ୍ୟକ୍ତି ଏହି ବାହ୍ୟ ସ୍ଥୂଳ ଜଗତ୍‌ରୂପ ଶରୀରରେ ବିରାଜମାନ – ସେହି ସର୍ବରୂପ ବୈଶ୍ୱାନର ପୂର୍ଣ୍ଣବ୍ରହ୍ମ ପରମାତ୍ମାଙ୍କ ପ୍ରଥମ ପାଦ ଅଟେ ।

ଯିଏ ବିଶ୍ୱ(ଅର୍ଥାତ୍ ଅନେକ) ଓ ନର ମଧ୍ୟ ଅଟନ୍ତି, ତାଙ୍କୁ ବୈଶ୍ୱାନର କୁହାଯାଏ– ଏହି ବ୍ୟୁତ୍ପତ୍ତି ଅନୁଯାୟୀ ସ୍ଥୂଳ–ଜଗତ୍–ରୂପୀ ଶରୀର ସର୍ବରୂପ ପରମେଶ୍ୱରଙ୍କୁ ଏଠାରେ ବୈଶ୍ୱାନର କୁହାଯାଇଛି । ବ୍ରହ୍ମସୂତ୍ରରେ[୧] ଏହା ସ୍ପଷ୍ଟ କରାଯାଇଛି କି, ଆତ୍ମା ଓ ବ୍ରହ୍ମ– ଏହି ଦୁଇଟିର ବାଚକ ଯେଉଁଠାରେ 'ବୈଶ୍ୱାନର' ପଦ ଆସୁଛି, ସେଠାରେ ସେହି ଜୀବାତ୍ମାଙ୍କର କିମ୍ବା ଅଗ୍ନିଙ୍କର ନାମ ଆସୁନାହିଁ । ତାହା ପରବ୍ରହ୍ମ ପରମେଶ୍ୱର ବାଚକ ଅଟେ, ଏପରି ବୁଝିବା ଦରକାର । ବୈଶ୍ୱାନର ବିଦ୍ୟାରେ ମଧ

୧ (ଅଧ୍ୟାୟ–୧, ପାଦ –୨, ସୂତ୍ର–୧୪)

ଏହିଭଳି ପରମାତ୍ମାଙ୍କୁ ବୈଶ୍ୱାନର କୁହାଯାଇଛି[୧] । ଅତଃ ଏଠାରେ 'ଜାଗରିତ ସ୍ଥାନଃ' ଏହି ପଦ ବଦଳରେ ଜାଗ୍ରତ ଅବସ୍ଥାର ଅଭିମାନୀ ଜୀବାତ୍ମାଙ୍କୁ ବ୍ରହ୍ମର ପ୍ରଥମ ପାଦ ଅଥବା ବୈଶ୍ୱାନର ମାନିବା ଠିକ୍ ହେଉନାହିଁ । କାରଣ ତିନି ଅବସ୍ଥାର ଦୃଷ୍ଟାନ୍ତରୁ ବ୍ରହ୍ମ ତିନି ଅବସ୍ଥାରେ ସ୍ଥିତ ହୋଇଥିବା କଥା ବତାଯାଇଛି । ସେ ସର୍ବେଶ୍ୱର, ସର୍ବଜ୍ଞ, ଅନ୍ତର୍ଯ୍ୟାମୀ, ସମ୍ପୂର୍ଣ୍ଣ ଜଗତ୍‌ର କାରଣ ତଥା ସମସ୍ତ ପ୍ରାଣୀଗଣଙ୍କ ଉତ୍ପତ୍ତି ଓ ପ୍ରଳୟର ସ୍ଥାନ ଅଟନ୍ତି । ସମସ୍ତ ଲକ୍ଷଣ ଜୀବାତ୍ମାରେ ପ୍ରକାଶିତ ହୋଇ ନ ପାରେ । ଏଣୁ ଏଠାରେ ମଧ ସର୍ବାତ୍ମା ବୈଶ୍ୱାନର ପରମେଶ୍ୱରଙ୍କୁ ହିଁ ପରବ୍ରହ୍ମଙ୍କର ଗୋଟିଏ ପାଦ ବୋଲି କୁହାଯାଇଛି । ତେଣୁ ଏହିଭଳି ମାନିବା ଯୁକ୍ତିସଙ୍ଗତ ପ୍ରତୀତ ହେଉଛି ।।୩।।

**ସ୍ୱପ୍ନସ୍ଥାନୋଽନ୍ତଃପ୍ରଜ୍ଞଃ ସପ୍ତାଙ୍ଗ ଏକୋନବିଂଶତିମୁଖଃ**
**ପ୍ରବିବିକ୍ତଭୁକ୍ ତୈଜସୋ ଦ୍ୱିତୀୟଃ ପାଦଃ ।। ୪ ।।**

**ମନ୍ତ୍ରାର୍ଥ :** ସ୍ୱପ୍ନସଦୃଶ ସୂକ୍ଷ୍ମ ଜଗତ୍ ଯାହାଙ୍କର ସ୍ଥାନ, ଯାହାଙ୍କର ଜ୍ଞାନ ସଙ୍କଳ୍ପମୟ ସୂକ୍ଷ୍ମ ଜଗତ୍‌ରେ ବ୍ୟାପ୍ତ, ପୂର୍ବୋକ୍ତ ସପ୍ତ ଅଙ୍ଗଯୁକ୍ତ, ଊନବିଂଶ ମୁଖବିଶିଷ୍ଟ ସୂକ୍ଷ୍ମ ଜଗତ୍‌ର ଭୋକ୍ତା, ତୈଜସ-ପ୍ରକାଶକ ସୂତ୍ରାତ୍ମା ହିରଣ୍ୟଗର୍ଭ ଉକ୍ତ ପରବ୍ରହ୍ମଙ୍କର ଦ୍ୱିତୀୟ ପାଦ ଅଟନ୍ତି ।

**ସାମାନ୍ୟ ବ୍ୟାଖ୍ୟା–** ଏହି ମନ୍ତ୍ରରେ ପୂର୍ଣ୍ଣବ୍ରହ୍ମ ପରମାତ୍ମାଙ୍କ ଦ୍ୱିତୀୟ ପାଦର ବର୍ଣ୍ଣନ ହୋଇଛି । ଭାବ ହେଉଛି, ଯେଉଁଭଳି ସ୍ୱପ୍ନ ଅବସ୍ଥାରେ ସୂକ୍ଷ୍ମଶରୀର ଅଭିମାନୀ ଜୀବାତ୍ମା ପ୍ରଥମ ବର୍ଣ୍ଣିତ ସୂକ୍ଷ୍ମ ସାତ ଅଙ୍ଗଯୁକ୍ତ ଓ ଊନବିଂଶ ମୁଖ ବିଶିଷ୍ଟ ହୋଇ ସୂକ୍ଷ୍ମ ବିଷୟକୁ ଉପଭୋଗ କରିଥାଏ ଏବଂ ତନ୍ମଧରେ ତାଙ୍କ ଜ୍ଞାନ ବିସ୍ମୃତ ହୋଇ ରହିଥାଏ, ସେହିଭଳି ଯିଏ ସ୍ଥୂଳ ଅବସ୍ଥା ଭିନ୍ନ ସୂକ୍ଷ୍ମରୂପରେ ପରିଣତ ହୋଇ ସପ୍ତଲୋକରୂପ ସପ୍ତଅଙ୍ଗ ତଥା ଇନ୍ଦ୍ରିୟ, ପ୍ରାଣ ଓ ଅନ୍ତଃକରଣରୂପ ଊନବିଂଶ ମୁଖଯୁକ୍ତ ସୂକ୍ଷ୍ମ ଜଗତ୍‌ରୂପ ଶରୀରରେ ସ୍ଥିତ, ତାଙ୍କ ଆତ୍ମା ହିରଣ୍ୟଗର୍ଭ ଅଟେ– ସେ ସମଗ୍ର ଜଡ଼ ଚେତନାତ୍ମକ ସୂକ୍ଷ୍ମ ଜଗତ୍‌ର ସମସ୍ତ ତତ୍ତ୍ୱର ନିୟନ୍ତା, ଜ୍ଞାତା ଓ ସମସ୍ତଙ୍କୁ ନିଜ ମଧରେ ପ୍ରବିଷ୍ଟ କରାଇଥାନ୍ତି, ଏଣୁ ତାହାଙ୍କୁ ଭୋକ୍ତା ଓ ଜ୍ଞାତା କୁହାଯାଏ । ସେହି ତୈଜସ୍ ଅର୍ଥାତ୍ ସୂକ୍ଷ୍ମ ପ୍ରକାଶମୟ ହିରଣ୍ୟଗର୍ଭ ପୂର୍ଣ୍ଣବ୍ରହ୍ମ ପରମାତ୍ମାଙ୍କର ଦ୍ୱିତୀୟ ପାଦ ଅଟନ୍ତି ।

ସମସ୍ତ ଜ୍ୟୋତିଗଣଙ୍କ ଜ୍ୟୋତି, ସମସ୍ତଙ୍କୁ ପ୍ରକାଶକାରୀ ପରମ ପ୍ରକାଶମୟ ହିରଣ୍ୟଗର୍ଭରୂପ ପରମେଶ୍ୱରଙ୍କର ହିଁ ବର୍ଣ୍ଣନ ଏଠାରେ ତୈଜସ ନାମରେ ହୋଇଛି ।

---

୧ (ଛା.ଉ. ୫/୧୧/୧-୬)

ବ୍ରହ୍ମସୂତ୍ରରେ[୧] ଏହିକଥା ସ୍ପଷ୍ଟ କରାଯାଇଛି କି ପୁରୁଷ ପ୍ରକରଣରେ ଆନିତ 'ଜ୍ୟୋତିଃ' ବା 'ତେଜଃ' ଶବ୍ଦ ବ୍ରହ୍ମବାଚକ ବୋଲି ବୁଝିବାକୁ ହେବ । ଯେଉଁଠାରେ ବ୍ରହ୍ମଙ୍କ ପାଦ ବର୍ଣ୍ଣନ ହେଉଛି ସେଠାରେ ଦ୍ୱିତୀୟ ଅର୍ଥ/ଦ୍ୱିରୁକ୍ତି ବୋଧକ– ଜୀବ ଅଥବା ପ୍ରକାଶ ଆଦି ମାନିବା କୌଣସି ମତେ ଉଚିତ ନୁହେଁ । ଉପନିଷଦରେ ଅନେକ ସ୍ଥାନରେ ପରମେଶ୍ୱରଙ୍କ ବର୍ଣ୍ଣନ 'ଜ୍ୟୋତି'[୨] ଓ 'ତେଜସ'[୩] ନାମରେ ହୋଇଛି ।

ଏଣୁ ଏଠାରେ କେବଳ 'ସ୍ୱପ୍ନସ୍ଥାନଃ' ପଦ ବଳରେ ସ୍ୱପ୍ନାବସ୍ଥାଭିମାନୀ ଜୀବାତ୍ମାକୁ ବ୍ରହ୍ମର ଦ୍ୱିତୀୟ ପାଦ ମାନିନେବା ଉଚିତ ହେବ ନାହିଁ । ଏଥିରେ ତୃତୀୟ ମନ୍ତ୍ର ବର୍ଣ୍ଣିତ କାରଣ ତ ନିଶ୍ଚିତ, ତଦ୍‌ଭିନ୍ନ ଆଉ ଗୋଟିଏ କାରଣ ବତାଯାଇଛି କି, ସ୍ୱପ୍ନାବସ୍ଥାରେ ଜୀବାତ୍ମାଙ୍କ ଜ୍ଞାନ ଜାଗ୍ରତ ଅବସ୍ଥା ଅପେକ୍ଷା କମ୍ ହୋଇଯାଏ କିନ୍ତୁ ଏଠାରେ ଯାହାଙ୍କର ବର୍ଣ୍ଣନ ତୈଜସ ନାମରେ କରାଯାଇଛି, ସେ ଦ୍ୱିତୀୟ ପାଦରୂପ ହିରଣ୍ୟଗର୍ଭର ଜ୍ଞାନ ଜାଗ୍ରତ ଅପେକ୍ଷା ଅଧିକ ବିକଶିତ ହୋଇଥାନ୍ତି, ଏଣୁ ଏହାକୁ ତୈଜସ ବା ଜ୍ଞାନସ୍ୱରୂପ ବତାଯାଇଛି ଓ ଦଶମ ମନ୍ତ୍ରରେ ଓଁ କାରର ଦ୍ୱିତୀୟ ମାତ୍ରା ଓ ତତ୍ ସହିତ ଏହାର ଏକତା ପ୍ରକାଶକରି ଏହାକୁ ଶ୍ରେଷ୍ଠ ବୋଲି କୁହାଯାଇଛି । ଏହାକୁ ଜାଣିବା ଦ୍ୱାରା ଜ୍ଞାନ–ପରମ୍ପରାର ବୃଦ୍ଧି ଓ ତାଙ୍କ ସନ୍ତାନ ଜ୍ଞାନୀ ହେବାକଥା କୁହାଯାଇଛି । ସ୍ୱପ୍ନାଭିମାନୀ ଜୀବାତ୍ମାଙ୍କ ଜ୍ଞାନର ଏପରି ଫଳ ହୋଇ ନ ପାରେ, ଏଣୁ ତୈଜସର ବାଚ୍ୟାର୍ଥ ମଧ୍ୟ ସୂକ୍ଷ୍ମ ଜଗତ୍‌ର ସ୍ୱାମୀ ହିରଣ୍ୟଗର୍ଭଙ୍କୁ ହିଁ ମାନିବା ଯୁକ୍ତିସଙ୍ଗତ ।।୪।।

**ଯତ୍ର ସୁପ୍ତୋ ନ କଞ୍ଚନ କାମଂ କାମୟତେ ନ କଞ୍ଚନ ସ୍ୱପ୍ନଂ ପଶ୍ୟତି ତତ୍‌ସୁଷୁପ୍ତମ୍ । ସୁଷୁପ୍ତସ୍ଥାନ ଏକୀଭୂତଃ ପ୍ରଜ୍ଞାନଘନ ଏବାନନ୍ଦମୟୋ ହ୍ୟାନନ୍ଦଭୁକ୍‌ଚେତୋମୁଖଃ ପ୍ରାଜ୍ଞସ୍ତୃତୀୟଃ ପାଦଃ ।। ୫ ।।**

**ମନ୍ତ୍ରାର୍ଥ :** ଯେଉଁ ଅବସ୍ଥାରେ ସୁପ୍ତ ମାନବ କୌଣସି ଭୋଗର କାମନା କରେ ନାହିଁ, କୌଣସି ପ୍ରକାରର ସ୍ୱପ୍ନ ଦେଖେ ନାହିଁ, ସେହି ଅବସ୍ଥାକୁ ସୁଷୁପ୍ତି କୁହାଯାଏ । ଏଭଳି ସୁଷୁପ୍ତି ସଦୃଶ ଯେଉଁ ଜଗତ୍‌ର ପ୍ରଳୟ ଓ କାରଣାବସ୍ଥା ରହିଛି, ତାହା ଯାହାଙ୍କ ଶରୀର ଅଟେ, ଯିଏ ଏକରୂପ ହୋଇ ଅଛନ୍ତି, ଯିଏ ଏକମାତ୍ର ଘନୀଭୂତ ବିଜ୍ଞାନରୂପ ଅଟନ୍ତି ଯିଏ ଏକମାତ୍ର ଆନନ୍ଦମୟ ଅର୍ଥାତ୍

---

୧ 'ଜ୍ୟୋତିଶ୍ଚରଣାଭିଧାନାତ୍' (୧/୧/୨୪ ସୂତ୍ରରେ)

୨ (ଅଥ ଯଦତଃ ପରୋ ଦିବୋ ଜ୍ୟୋତିର୍ଦୀପ୍ୟତେ– ଛା.ଉ.୩/୧୩/୭)

୩ (ଯେନ ସୂର୍ଯ୍ୟସ୍ତପତି ତେଜସେଦ୍ଧଃ – ତୈ.ବ୍ରା. ୩/୧୨/୯/୭)

ଆନନ୍ଦସ୍ୱରୂପ ଅଟନ୍ତି, ପ୍ରକାଶ ଯାହାଙ୍କର ମୁଖ ଅଟେ, ଯିଏ ଏକମାତ୍ର ଆନନ୍ଦର ଭୋକ୍ତା ଅଟନ୍ତି, ସେହି 'ପ୍ରାଜ୍ଞ', ବ୍ରହ୍ମର ତୃତୀୟ ପାଦ ଅଟନ୍ତି ।।୫।।[୧]

**ସାମାନ୍ୟ ବ୍ୟାଖ୍ୟା–** ଏହି ମନ୍ତ୍ରରେ ଜାଗ୍ରତର କାରଣ ଓ ଲୟ ଅବସ୍ଥାରୂପ ସୁଷୁପ୍ତି ସହିତ ପ୍ରଳୟ କାଳରେ କାରଣ ରୂପେ ସ୍ଥିତ ଜଗତ୍‌ର ସମାନତା ଦର୍ଶାଇବା ପାଇଁ ପ୍ରଥମେ ସୁପ୍ରସିଦ୍ଧ ସୁଷୁପ୍ତି ଅବସ୍ଥାର ଲକ୍ଷଣ ବତାଇ ପରେ ପୂର୍ଣ୍ଣବ୍ରହ୍ମ ପରମାତ୍ମାଙ୍କ ତୃତୀୟ ପାଦର ବର୍ଣ୍ଣନା କରାଯାଇଛି । ଭାବ ହେଉଛି– ଯେଉଁ ଅବସ୍ଥାରେ ଶୋଇଥିବା ମନୁଷ୍ୟ କୌଣସିମତେ କୌଣସି ଭୋଗର କାମନା କରିନଥାଏ କି ଅନୁଭବ ବି କରିନଥାଏ, ଏପରିକି କୌଣସି ପ୍ରକାରର ସ୍ୱପ୍ନ ମଧ୍ୟ ଦେଖିନଥାଏ ସେହିପରି ଅବସ୍ଥାକୁ ସୁଷୁପ୍ତି କୁହାଯାଏ । ଏହି ସୁଷୁପ୍ତି ଅବସ୍ଥାସଦୃଶ ପ୍ରଳୟ କାଳରେ ଜଗତ୍‌ର ଯେଉଁ କାରଣ ଅବସ୍ଥା ରହିଛି, ଯେଉଁଥିରେ କି ନାନାରୂପ ପ୍ରାକଟ୍ୟ ହୁଏ ନାହିଁ, ଏପରି ଅବ୍ୟାକୃତ ପ୍ରକୃତି ହିଁ ଯାହାଙ୍କ ଶରୀର ଅଟେ ତଥା ଯିଏ ଏକ ଓ ଅଦ୍ୱିତୀୟ ରୂପରେ ସ୍ଥିତ, ଉପନିଷଦରେ ଯାହାଙ୍କ କେଉଁଠି ବର୍ଣ୍ଣନ ସତ୍ ନାମରେ[୨] ଓ ପୁଣି କେଉଁଠି ଆତ୍ମାନାମରେ[୩] ଆସିଥାଏ ଏବଂ ଯାହାର ଏକମାତ୍ର ଚେ଼ତନା ପ୍ରକାଶ ହିଁ ମୁଖ ଅଟେ, ଆଉ ଆନନ୍ଦ ହିଁ ଭୋଜନ ଅଟେ, ସେହି ବିଜ୍ଞାନଘନ, ଆନନ୍ଦମୟ ପ୍ରାଜ୍ଞ ହିଁ ସେହି ପୂର୍ଣ୍ଣ ବ୍ରହ୍ମଙ୍କର ତୃତୀୟ ପାଦ ଅଟେ ।

ଏଠାରେ ପ୍ରାଜ୍ଞ ନାମରେ ମଧ୍ୟ ସୃଷ୍ଟିର କାରଣ ସର୍ବଜ୍ଞ ପରମେଶ୍ୱରଙ୍କର ବର୍ଣ୍ଣନ ହୋଇଛି । ବ୍ରହ୍ମସୂତ୍ର ପ୍ରଥମ ଅଧ୍ୟାୟର ଚ଼ତୁର୍ଥ ପାଦ ଅନ୍ତର୍ଗତ ପଞ୍ଚମ ସୂତ୍ରରେ 'ପ୍ରାଜ୍ଞ' ଶବ୍ଦ ଈଶ୍ୱରଙ୍କ ଅର୍ଥରେ ପ୍ରଯୁକ୍ତ ହୋଇଛି । ଏହା ବ୍ୟତୀତ ଅନେକ ସୂତ୍ରରେ ଈଶ୍ୱରଙ୍କ ସ୍ଥାନରେ 'ପ୍ରାଜ୍ଞ' ଶବ୍ଦର ପ୍ରୟୋଗ କରାହୋଇଛି । ପୂଜ୍ୟପାଦ ସ୍ୱାମୀ ଶଙ୍କରାଚ଼ାର୍ଯ୍ୟ ବ୍ରହ୍ମସୂତ୍ରର ଭାଷ୍ୟରେ ସ୍ଥାନେ ସ୍ଥାନେ ପରମେଶ୍ୱରଙ୍କ ବଦଳରେ 'ପ୍ରାଜ୍ଞ' ଶବ୍ଦର ପ୍ରୟୋଗ କରିଛନ୍ତି । ଉପନିଷଦରେ ମଧ୍ୟ ସମ ବ୍ୟବହାର[୪] ହୋଇଛି । ପ୍ରସ୍ତୁତ ମନ୍ତ୍ରରେ ସଙ୍ଗେ ସଙ୍ଗେ ଈଶ୍ୱର ଭିନ୍ନ ଶଙ୍କାଭିମାନୀ ଜୀବାତ୍ମାଙ୍କ ବର୍ଣ୍ଣନ ହୋଇଛି ।

୧ ଏହା ବ୍ୟତୀତ ଏକାଦଶ ମନ୍ତ୍ରରେ ଓଁ କାରର ତୃତୀୟ ମନ୍ତ୍ର ସହିତ ତୃତୀୟ ପାଦର ଏକତାକରି ତାକୁ ଜାଣିବାର ଫଳ ସମସ୍ତଙ୍କ ଜାଣିବା ଓ ସମ୍ପୂର୍ଣ୍ଣ ଜଗତ୍‌କୁ ବିଲୀନ କରିଦେବା କଥା ବତାଯାଇଛି । ଏଣୁ ମଧ୍ୟ 'ପ୍ରାଜ୍ଞଃ' ପଦର ବାଚ୍ୟାର୍ଥ କାରଣ ଜଗତ୍‌ର ଅଧିଷ୍ଠାତା ପରମେଶ୍ୱରଙ୍କୁ ହିଁ ବୁଝିନେବା ଦରକାର । ସେହି ପ୍ରାଜ୍ଞ ହିଁ ପୂର୍ଣ୍ଣବ୍ରହ୍ମ ପରମାତ୍ମାଙ୍କର ତୃତୀୟ ପାଦ ଅଟେ ।

୨ (ସଦେବ ସୋମ୍ୟେଦମଗ୍ର ଆସୀତ୍–ଛା.ଉ.–୬/୨/୧)

୩ (ଆତ୍ମା ବା ଇଦମେକ ଏବାଗ୍ର ଆସୀତ୍– ଐ.ଉ–୧/୧/୧)

୪ (ବୃ.ଉ– ୪/୩/୨୧ ଓ ୩୫)

ଏଠାରେ 'ସୁଷୁପ୍ତି' ପ୍ରକରଣ ଏଥିରୁ ଏହା ସ୍ପଷ୍ଟ ହେଉଛି କି କୌଣସି ଦୃଷ୍ଟିରେ 'ପ୍ରାଜ୍ଞ' ଶବ୍ଦ ଜୀବାତ୍ମା ବାଚକ ନୁହେଁ । ସ୍ୱୟଂ ଶଙ୍କରାଚାର୍ଯ୍ୟ ଲେଖିଛନ୍ତି[୧], ସର୍ବଜ୍ଞାତାରୂପ ପ୍ରଜ୍ଞା ନିତ୍ୟ ସଂଯୁକ୍ତ ହେବା କାରଣରୁ ପ୍ରାଜ୍ଞ ନାମ ପରମେଶ୍ୱରଙ୍କର ଅଟେ, ଅତଃ ଉପରୋକ୍ତ ଉପନିଷଦ ମନ୍ତ୍ରରେ ପରମେଶ୍ୱରଙ୍କ ବର୍ଣ୍ଣନ ରହିଛି । ତଦଭିନ୍ନ ବିଶେଷଣ ରୂପରେ 'ପ୍ରଜ୍ଞାନଘନ' ଓ 'ଆନନ୍ଦମୟ' ଶବ୍ଦର ପ୍ରୟୋଗ ବି ହୋଇଛି ଯାହା ଜୀବାତ୍ମା ବାଚକ ହୋଇ ନ ପାରେ ।[୨] ଏଣୁ ଏଠାରେ କେବଳ 'ସୁଷୁପ୍ତିସ୍ଥାନ' ପଦ ବଦଳରେ ସୁଷୁପ୍ତି ଅଭିମାନୀ ଜୀବାତ୍ମାଙ୍କୁ ବ୍ରହ୍ମର ତୃତୀୟ ପାଦ ମାନିନେବା ଉଚିତ ହେବ ନାହିଁ । କାରଣ ଏହାପରେ ଆଗ ମନ୍ତ୍ରରେ ଏହା ସ୍ପଷ୍ଟ କରିଦିଆଯାଇଛି । ଏହି ତିନି ଅବସ୍ଥାରେ ସ୍ଥିତ ତିନି ପାଦ ନାମରେ ଯାହାଙ୍କର ବର୍ଣ୍ଣନ ହୋଇଛି ସେ ସର୍ବେଶ୍ୱର, ସର୍ବଜ୍ଞ, ଅନ୍ତର୍ଯ୍ୟାମୀ, ସମ୍ପୂର୍ଣ୍ଣ ଜଗତ୍‌ର କାରଣ ଓ ସମସ୍ତ ପ୍ରାଣିଗଣଙ୍କ ଉତ୍ପତ୍ତି ଓ ପ୍ରଳୟ ସ୍ଥାନ ଅଟନ୍ତି ।

*ସମ୍ବନ୍ଧ : ଉପର ବର୍ଣ୍ଣିତ ବ୍ରହ୍ମଙ୍କ ପାଦ ବୈଶ୍ୱାନର, ତୈଜସ ଓ ପ୍ରାଜ୍ଞ କେଉଁ ନାମରେ ବିଖ୍ୟାତ ଅଟେ ? ତା'ର ସମାଧାନ ଆଗକୁ ବତାଯାଇଛି –*

**ଏଷ ସର୍ବେଶ୍ୱର ଏଷ ସର୍ବଜ୍ଞ ଏଷୋଽନ୍ତର୍ଯ୍ୟାମ୍ୟେଷ ଯୋନିଃ ସର୍ବସ୍ୟ ପ୍ରଭାବପ୍ୟୟୌ ହି ଭୂତାନାମ୍ ।। ୬ ।।**

**ମନ୍ତ୍ରାର୍ଥ :** ସେ ସମସ୍ତଙ୍କର ଈଶ୍ୱର, ସର୍ବେଶ୍ୱର ସର୍ବଜ୍ଞ, ସର୍ବାନ୍ତର୍ଯ୍ୟାମୀ, ସମ୍ପୂର୍ଣ୍ଣ ଜଗତ୍‌ର କାରଣ ଅଟନ୍ତି କାରଣ ସମସ୍ତ ପ୍ରାଣୀଙ୍କର ଉତ୍ପତ୍ତି, ସ୍ଥିତି ଓ ପ୍ରଳୟର ସ୍ଥାନ ସେ ହିଁ ଅଟନ୍ତି ।

**ସାମାନ୍ୟ ବ୍ୟାଖ୍ୟା–** ଯେଉଁ ପରମେଶ୍ୱରଙ୍କୁ ତିନି ପାଦ ରୂପେ ବର୍ଣ୍ଣନ କରାଯାଇଛି ସେ ଈଶ୍ୱରଙ୍କର ମଧ୍ୟ ଈଶ୍ୱର ଅଟନ୍ତି । ସେ ହିଁ ସର୍ବଜ୍ଞ ଓ ସର୍ବାନ୍ତର୍ଯ୍ୟାମୀ ଅଟନ୍ତି । ସେ ମଧ୍ୟ ସମ୍ପୂର୍ଣ୍ଣ ଜଗତ୍‌ର କାରଣ ଅଟନ୍ତି କାରଣ ସମ୍ପୂର୍ଣ୍ଣ ପ୍ରାଣୀଗଣଙ୍କ ଉତ୍ପତ୍ତି, ସ୍ଥିତି ଓ ପ୍ରଳୟର ସ୍ଥାନ ସେ ହିଁ ଅଟନ୍ତି । ପ୍ରଶ୍ନୋପନିଷଦରେ ତିନିମାତ୍ରା ଯୁକ୍ତ ଓଁକାର ଦ୍ୱାରା ପରମ ପୁରୁଷ ପରମେଶ୍ୱରଙ୍କ ଧ୍ୟାନ କରିବାର କଥା କହି ତାହାର ଫଳ ସମସ୍ତ ପାପ ବିରହିତ ହୋଇ ଅବିନାଶୀ ପରାତ୍ପର ପୁରୁଷୋତ୍ତମଙ୍କୁ ପ୍ରାପ୍ତ କରିନେବା କଥା ବର୍ଣ୍ଣିତହୋଇଛି ।[୩] ଅତଃ ପୂର୍ବବର୍ଣ୍ଣିତ ବୈଶ୍ୱାନର, ତୈଜସ ଓ ପ୍ରାଜ୍ଞ ପରମେଶ୍ୱରଙ୍କର ହିଁ ନାମ ଅଟେ । ଭିନ୍ନ ଭିନ୍ନ ସ୍ଥିତିରେ ତାଙ୍କର ବର୍ଣ୍ଣନା ଭିନ୍ନ ଭିନ୍ନ ନାମରେ କରାଯାଇଛି ।। ୬

୧ ବ୍ରହ୍ମସୂତ୍ର–୧/୩/୪୨ ଭାଷ୍ୟରେ

୨ (ବ୍ର.ସୂ– ୧/୧/୧୨ ଓ ୧୬–୧୭)

୩ (ପ୍ର.ଉ – ୫/୫)

*ସମ୍ବନ୍ଧ : ତୁରୀୟର ସ୍ୱରୂପ କିପ୍ରକାର,*

**ନାନ୍ତଃପ୍ରଜ୍ଞଂ ନ ବହିଷ୍ପ୍ରଜ୍ଞଂ ନୋଭୟତଃପ୍ରଜ୍ଞଂ ନ ପ୍ରଜ୍ଞାନଘନଂ ନ ପ୍ରଜ୍ଞଂ ନାପ୍ରଜ୍ଞମ୍ । ଅଦୃଷ୍ଟମବ୍ୟବହାର୍ଯ୍ୟମଗ୍ରାହ୍ୟମ–ଲକ୍ଷଣମଚିନ୍ତ୍ୟମବ୍ୟପଦେଶ୍ୟମେକାତ୍ମପ୍ରତ୍ୟୟସାରଂ ପ୍ରପଞ୍ଚୋପଶମଂ ଶାନ୍ତଂ ଶିବମଦ୍ୱୈତଂ ଚତୁର୍ଥଂ ମନ୍ୟନ୍ତେ ସ ଆତ୍ମା ସ ବିଜ୍ଞେୟଃ ।।୭।।**

**ମନ୍ତ୍ରାର୍ଥ :** ଯିଏ ନାଁ ଅନ୍ତଃସ୍ଥଳରେ ପ୍ରଜ୍ଞାବାନ ଅଟନ୍ତି ନାଁ ବହିଃସ୍ଥଳରେ କିମ୍ବା ଉଭୟ ସ୍ଥଳରେ ପ୍ରଜ୍ଞାବାନ୍ ଅଟନ୍ତି, ନାଁ ପ୍ରଜ୍ଞାନଘନ ଅଟନ୍ତି, ନାଁ ଜ୍ଞାତା ନାଁ ଅଜ୍ଞାତା ମଧ୍ୟ ଅଟନ୍ତି ପୁଣି ଯାହାଙ୍କର କୌଣସି ଚିହ୍ନ ନାହିଁ, ଯିଏ ଚିନ୍ତନ ମାତ୍ରକେ ଆସି ପାରନ୍ତି ନାହିଁ, ଯିଏ କହିବାକୁ ଆସନ୍ତି ନାହିଁ– ଏକମାତ୍ର ଆତ୍ମସତ୍ତାର ପ୍ରତୀତ ହିଁ ଯାହାଙ୍କର ସାର (ପ୍ରମାଣ) ଅଟେ– ଯେଉଁଥିରେ ପ୍ରପଞ୍ଚର ସର୍ବଥା ଅଭାବ ଅଟେ, ସେହିପରି ସର୍ବଥା ଶାନ୍ତ କଲ୍ୟାଣମୟ ଅଦ୍ୱିତୀୟ ତତ୍ତ୍ୱ(ପରବ୍ରହ୍ମ ପରମାତ୍ମାଙ୍କର) ଚତୁର୍ଥ ପାଦ ଅଟେ । ଏଭଳି ବ୍ରହ୍ମଜ୍ଞାନୀମାନେ ମାନିଥାନ୍ତି । ସେହିଁ ପରମାତ୍ମା ଓ ଜାଣିବାଯୋଗ୍ୟ ତଥା ଜ୍ଞାତବ୍ୟ ଅଟନ୍ତି ।

**ସାମାନ୍ୟ ବ୍ୟାଖ୍ୟା–** ଏହି ମନ୍ତ୍ରରେ ନିର୍ଗୁଣ ନିରାକାର ନିର୍ବିଶେଷ ସ୍ୱରୂପକୁ ପୂର୍ଣ୍ଣବ୍ରହ୍ମ ପରମାତ୍ମାଙ୍କର ଚତୁର୍ଥପାଦ ଭାବରେ ବତାଯାଇଛି । ଭାବ ହେଉଛି ଯାହାର ଜ୍ଞାନ ନାଁ ବାହାରକୁ ନାଁ ଭିତର କି ଉଭୟ ଆଡକୁ ମଧ୍ୟ ନୁହେଁ । ଯିଏ ଜ୍ଞାନ ସ୍ୱରୂପ ନୁହଁନ୍ତି କି ଜ୍ଞେୟ ଓ ଅଜ୍ଞେୟ ମଧ୍ୟ ନୁହଁନ୍ତି । ଚିନ୍ତନ କରିବା, (କିଏ କହିଦେଲେ) ବତେଇଦେବା ଆଦିରେ ମଧ୍ୟ ସେ ଆନତ ନୁହଁନ୍ତି କି ନାଁ ଯାହାଙ୍କର କୌଣସି ଲକ୍ଷଣ ଅଛି, ଯେଉଁଥିରେ ସମସ୍ତ ପ୍ରପଞ୍ଚର ଅଭାବ, ଏକମାତ୍ର ପରମାତ୍ମ ସତ୍ତାର ପ୍ରତୀତ ହିଁ ଯହିଁର ସାର ବା ପ୍ରମାଣ ଅଟେ । ଏପରି ସର୍ବଥା, ଶାନ୍ତ, କଲ୍ୟାଣମୟ ଅଦ୍ୱିତୀୟ ତତ୍ତ୍ୱ ପୂର୍ଣ୍ଣବ୍ରହ୍ମଙ୍କର ଚତୁର୍ଥ ପାଦ ଭାବରେ ବିଦିତ ହୋଇଥାଏ । ଏହିଭଳି ଯାହାଙ୍କୁ ଚାରି ପାଦରେ ବିଭାଗୀକରଣକରି ବର୍ଣ୍ଣନା କରାଯାଇଛି, ସେ ହିଁ ପୂର୍ଣ୍ଣବ୍ରହ୍ମ ପରମାତ୍ମା ଅଟନ୍ତି । ତାଙ୍କୁ ଜାଣିବା ଦରକାର ।

ଏହି ମନ୍ତ୍ରରେ 'ଚତୁର୍ଥମ୍ ମନ୍ୟତେ' ପଦ ପ୍ରୟୋଗରୁ ସ୍ପଷ୍ଟ ହେଉଛି କି, ପରବ୍ରହ୍ମ ପରମାତ୍ମାଙ୍କର ଚାରିପାଦର କଳ୍ପନା କେବଳ ତାଙ୍କ ତତ୍ତ୍ୱ ବୁଝିବା ପାଇଁ କରାଯାଇଛି । ବାସ୍ତବରେ ସେ ଆମର ବୁଦ୍ଧି ଓ ତର୍କରୁ ସର୍ବାଦୌ ଅତୀତ ଅଟନ୍ତି ।।୭।।

*ସମ୍ବନ୍ଧ : ଉକ୍ତ ପରବ୍ରହ୍ମ ପରମାତ୍ମାଙ୍କର ତଦ୍‌ବାଚକ ପ୍ରଣବ ସହିତ ଏକାକାର କରି*

*ଆଗକୁ କୁହାଯାଇଛି –*

**ସୋଽୟମାତ୍ମାଧ୍ୟକ୍ଷରମୋଙ୍କାରୋଽଧିମାତ୍ରଂ ପାଦା ମାତ୍ରା ମାତ୍ରାଶ୍ଚ ପାଦା ଅକାର ଉକାରୋ ମକାର ଇତି ।। ୮ ।।**

**ମନ୍ତ୍ରାର୍ଥ :** ସେ (ଯାହାଙ୍କୁ ଚାରି ପାଦଯୁକ୍ତ ବୋଲି ବତାଯାଇଛି) ଏହି ପରମାତ୍ମା (ତଦ୍ ବାଚକ) ପ୍ରଣବ ଅଧିକାରରେ (ପ୍ରକରଣରେ) ବର୍ଣ୍ଣିତ ହେବାର କାରଣ ତିନିମାତ୍ରା ଯୁକ୍ତ ଓଁକାର ଅଟନ୍ତି– 'ଅ', 'ଉ', ଆଉ 'ମ'– ଏହି ମାତ୍ରା ତିନୋଟି ତିନି ପାଦ ଅଟନ୍ତି ଓ ସେହି ବ୍ରହ୍ମଙ୍କର ତିନିପାଦ ହିଁ ମାତ୍ରାତ୍ରୟ ଅଟନ୍ତି ।

**ସାମାନ୍ୟ ବ୍ୟାଖ୍ୟା–** ସେହି ପରବ୍ରହ୍ମ ପରମାତ୍ମା, ଯାହାଙ୍କର ଚାରିପାଦର ବର୍ଣ୍ଣନା କରାଯାଇଛି, ଏଠାରେ ଅନ୍ୟ ପ୍ରକରଣରେ ନିଜନାମରୁ ଅଭିନ୍ନ ହୋଇଥିବା କାରଣରୁ ତିନି ମାତ୍ରାଯୁକ୍ତ ଓଁକାର ଅଟନ୍ତି । 'ଅ', 'ଉ', ଆଉ 'ମ'– ଏହି ତିନି ମାତ୍ରା ହିଁ ତାଙ୍କର ଉପଯୁକ୍ତ ତିନିପାଦ ଓ ତାଙ୍କର ତିନି ପାଦ ହିଁ ଓଁକାରର ତିନି ମାତ୍ରା ଅଟନ୍ତି । ଯେଉଁଭଳି ଓଁ–କାର ପାଦଠାରୁ ପରମାତ୍ମା ଅଲଗା ନୁହଁନ୍ତି ଏଠାରେ ପାଦ ଓ ମାତ୍ରାର ଏକତା ଓଁ–କାର ଦ୍ୱାରା ପରବ୍ରହ୍ମ ପରମାତ୍ମାଙ୍କର ଉପାସନା ଉଦ୍ଦେଶ୍ୟରେ କରାଯାଇଛି, ସେଭଳି ମନେ ହୁଏ ।। ୮ ।।

*ସମ୍ବନ୍ଧ : ଓଁକାରର କେଉଁ ମାତ୍ରାରୁ ବ୍ରହ୍ମଙ୍କର କେଉଁ ପାଦର ଏକତା ରହିଛି ଓ ତାହା କାହିଁକି ? ଯେଉଁ ଜିଜ୍ଞାସା ପରେ ମାତ୍ରାତ୍ରୟର ରହସ୍ୟ ବୁଝେଇବା ପାଇଁ ପ୍ରଥମ ପାଦ ଓ ମାତ୍ରାର ଏକତା ପ୍ରତିପାଦନ କରାଯାଇଛି –*

**ଜାଗରିତସ୍ଥାନୋ ବୈଶ୍ୱାନରୋଽକାରଃ ପ୍ରଥମା ମାତ୍ରାଽଽପ୍ତେରାଦିମତ୍ତ୍ୱାଦ୍ୱାଽଽପ୍ନୋତି ହ ବୈ ସର୍ବାନ୍ କାମାନାଦିଶ୍ଚ ଭବତ ଯ ଏବଂ ବେଦ ।। ୯ ।।**

**ମନ୍ତ୍ରାର୍ଥ :** ଓଁ କାରର ପ୍ରଥମ ମାତ୍ରା 'ଅ'କାର ହିଁ ସମଗ୍ର ଜଗଦ୍ ଅର୍ଥାତ୍ ଶବ୍ଦ ମାତ୍ରରେ ବ୍ୟାପ୍ତ ହୋଇଥିବା କାରଣରୁ ଏବଂ ଆଦି ହୋଇଥିବା କାରଣରୁ ଜଗଦ୍ ସଦୃଶ ସ୍ଥୂଳ ଜଗଦ୍‌ରୂପ ଶରୀରଯୁକ୍ତ ବୈଶ୍ୱାନର ନାମକ ପ୍ରଥମ ପାଦ ଅଟନ୍ତି । ଯିଏ ଏହିଭଳି ଜାଣିଥାନ୍ତି ସେ ଅବଶ୍ୟ ହିଁ ସମ୍ପୂର୍ଣ୍ଣ ଭୋଗକୁ ପ୍ରାପ୍ତକରି ସମସ୍ତ ଜଗଦ୍‌ର ଆଦି/ମୁଖ୍ୟ ହୋଇଯାଇଥାନ୍ତି ।

**ସାମାନ୍ୟ ବ୍ୟାଖ୍ୟା–** ପରବ୍ରହ୍ମ ପରମାତ୍ମା ନାମାତ୍ମକ ଓଁକାରର ଯେଉଁ ପ୍ରଥମ ମାତ୍ରା

'ଅ' ଏହା ସମଗ୍ର ଜଗତ୍ ନାମରେ ଅର୍ଥାତ୍ କୌଣସି ଅର୍ଥକୁ ବତେଇବାକୁ/ବର୍ଣ୍ଣନା କରିବାକୁ ଯେତେ ଶବ୍ଦ ରହିଛି ସେ ସବୁଥିରେ ବ୍ୟାପ୍ତ ଅଟନ୍ତି । ସ୍ୱର ଅଥବା ବ୍ୟଞ୍ଜନ କୌଣସି ବର୍ଣ୍ଣ ଅକାର ରହିତ ନୁହେଁ । ଶ୍ରୁତି ମଧ କହିଥାଏ-'ଅକାରୋ ବୈ ସର୍ବବାକ୍'।[୧] ଗୀତାରେ ମଧ ଭଗବାନ କହିଛନ୍ତି କି ଅକ୍ଷରରେ (ବର୍ଣ୍ଣରେ) 'ଅ' ଅଟେ[୨] ତଥା ସମସ୍ତ ବର୍ଣ୍ଣମଧରେ 'ଅ' ହିଁ ପ୍ରଥମ ବର୍ଣ୍ଣ ଅଟେ । ଏହିଭଳି ଭାବରେ ଏହି ସ୍ଥୂଳ ଜଗତ୍‌ରୂପ ବିରାଟ ଶରୀରରେ ସେହି ବୈଶ୍ୱାନରରୂପ ଅନ୍ତର୍ଯ୍ୟାମୀ ପରମେଶ୍ୱର ବ୍ୟାପ୍ତ ଅଟନ୍ତି ଓ ବିରାଟ ରୂପରେ ସର୍ବ ପ୍ରଥମେ ସ୍ୱୟଂ ପ୍ରକଟ ହୋଇଥିବା କାରଣରୁ ଏହି ଜଗତ୍‌ର ଆଦି ମଧ ଅଟନ୍ତି।

ଏହି ଭଳି 'ଅ' ଆଡକୁ ଜଗତ୍ ସଦୃଶ ପ୍ରତ୍ୟକ୍ଷ ଦେଖାଦେଉଥିବା ଏହି ସ୍ଥୂଳ ଜଗତ୍‌ରୂପ ଶରୀରରେ ବ୍ୟାପ୍ତ ବୈଶ୍ୱାନର ନାମକ ପ୍ରଥମ ପାଦର ଏକତା ହୋଇଥିବା କାରଣରୁ 'ଅ' ହିଁ ପୂର୍ଣ୍ଣବ୍ରହ୍ମ ପରମେଶ୍ୱରଙ୍କର ପ୍ରଥମ ପାଦ ଅଟେ । ଯେଉଁ ମନୁଷ୍ୟ ଏହି ଭଳି 'ଅ'କାର ଓ ବିରାଟ ଶରୀରର ଆତ୍ମା ପରମେଶ୍ୱରଙ୍କ ଏକତାକୁ ଜାଣିଥାଏ ଓ ତାଙ୍କ ଉପାସନା କରିଥାଏ, ସେ ସମ୍ପୂର୍ଣ୍ଣ କାମନାଗଣଙ୍କୁ ଅର୍ଥାତ୍ ଇଚ୍ଛିତ ପଦାର୍ଥକୁ ପ୍ରାପ୍ତ କରିଥାଏ ଓ ଜଗତ୍‌ରେ ପ୍ରଧାନ ବା ସର୍ବମାନ୍ୟ ହୋଇ ବିରାଜମାନ କରିଥାଏ ।। ୯ ।।

*ସମ୍ବନ୍ଧ : ଏବେ ଦ୍ୱିତୀୟ ପାଦସ୍ଥ ଦ୍ୱିତୀୟ ମାତ୍ରାର ଏକତା ପ୍ରତିପାଦନ କରାଯାଉଛି -*

**ସ୍ୱପ୍ନସ୍ଥାନସ୍ତୈଜସ ଉକାରୋ ଦ୍ୱିତୀୟା ମାତ୍ରୋତ୍କର୍ଷା-ଦୁଭୟତ୍ୱାଦ୍ୱୋତ୍କର୍ଷତି ହ ବୈ ଜ୍ଞାନସଂତତି ସମାନଶ୍ଚ ଭବତି ନାସ୍ୟାବ୍ରହ୍ମବିତ୍କୁଳେ ଭବତି ଯ ଏବଂ ବେଦ ।।୧୦।।**

**ମନ୍ତ୍ରାର୍ଥ :** ଓଁ କାରର ଦ୍ୱିତୀୟମାତ୍ରା 'ଉ'(ଅ-ଠାରୁ) ଉତ୍କୃଷ୍ଟ ହୋଇଥିବା କାରଣରୁ ଏବଂ ଉଭୟେ ଭାବଯୁକ୍ତ ହୋଇଥିବାରୁ ସ୍ୱପ୍ନ ଭଳି ସୂକ୍ଷ୍ମ ଜଗତ୍‌ରୂପ ଶରୀର ତୈଜସ ନାମକ (ଦ୍ୱିତୀୟ ପାଦ) ଅଟେ । ଯିଏ ଏଭଳି ଜାଣିଥାନ୍ତି, ସେ ଅବଶ୍ୟ ଜ୍ଞାନର ପରମ୍ପରାକୁ ଉନ୍ନିତ ହୋଇ ସମ ଭାବଗ୍ରାହୀ ହୋଇଥାନ୍ତି । ତାଙ୍କ କୁଳରେ ହିରଣ୍ୟଗର୍ଭରୂପ ପରମେଶ୍ୱରଙ୍କୁ ଅଜ୍ଞ ବ୍ୟକ୍ତି ରହନ୍ତି ନାହିଁ ।

**ସାମାନ୍ୟ ବ୍ୟାଖ୍ୟା-** ପରବ୍ରହ୍ମ ପରମାତ୍ମାଙ୍କ ନାମାତ୍ମକ ଓଁକାରର ଦ୍ୱିତୀୟ

---

୧ (ଐ.ଆ-୨/୩/୬)

୨ ଗୀତା (୧୦/୩୩)

ମାତ୍ରା ଯାହା 'ଉ' ଅଟେ । ଏହା 'ଅ' ଠାରୁ ଉତ୍କୃଷ୍ଟ ହେବା କାରଣରୁ ଶ୍ରେଷ୍ଠ ତଥା 'ଅ' ଓ 'ମ' ଏହି ଦୁହିଁଙ୍କ ମଧ୍ୟରେ ରହିଥିବା କାରଣରୁ ଉଭୟଙ୍କ ସହିତ ଘନିଷ୍ଠ ସମ୍ବନ୍ଧ ରହିଛି ଅତଃ ଏହା ଉଭୟସ୍ୱରୂପ । ଏହିଭଳି ଭାବରେ ବୈଶ୍ୱାନର ତୈଜସ (ହିରଣ୍ୟଗର୍ଭ) ଉତ୍କୃଷ୍ଟ ଅଟେ ତଥା ବୈଶ୍ୱାନର ଓ ପ୍ରାଜ୍ଞର ମଧ୍ୟଗତ ହେବାରୁ ତାହା ଉଭୟସମ୍ବନ୍ଧୀ ମଧ୍ୟ ଅଟେ । ସମାନତା କାରଣରୁ ହିଁ 'ଉ' କୁ ତୈଜସ ନାମକ ଦ୍ୱିତୀୟ ପାଦ କୁହାଯାଇଛି । ଭାବ ଏହା ଅଟେ କି –ଏହି ସ୍ଥୂଳ ଜଗତ୍‌ର ପ୍ରାକଟ୍ୟ ଯୋଗୁଁ ପ୍ରଥମେ ପରମେଶ୍ୱରଙ୍କର ଆଦି ସଙ୍କଳ୍ପ ଦ୍ୱାରା ଯେଉଁ ସୂକ୍ଷ୍ମ ସୃଷ୍ଟି ଉତ୍ପନ୍ନ ହୋଇଥାଏ, ତାହାଙ୍କ ବର୍ଣ୍ଣନ ମାନସ–ସୃଷ୍ଟି ନାମରେ ଆସିଥାଏ । ଯେଉଁଥିରେ କି ସମସ୍ତ ତତ୍ତ୍ୱ ମନ୍ତ୍ର ମାତ୍ରା ରୂପରେ ରହିଥାନ୍ତି, ସ୍ଥୂଳ ରୂପରେ ପରିଗଣିତ ହୁଅନ୍ତି ନାହିଁ ସେହି ସୂକ୍ଷ୍ମ ଜଗତ୍–ରୂପ ଶରୀରରେ ଚେତନ–ପ୍ରକାଶସ୍ୱରୂପ ହିରଣ୍ୟଗର୍ଭ ପରମେଶ୍ୱର ଏହାର ଅଧିଷ୍ଠାତ୍ରୀ ହୋଇ ରହିଥାନ୍ତି ତଥା କାରଣ–ଜଗତ୍ ଓ ସ୍ଥୂଳ–ଜଗତ୍ ଉଭୟଙ୍କ ଠାରେ ହିଁ ସ୍ଥୂଳ ଜଗତ୍‌ର ଘନିଷ୍ଠ ସମ୍ବନ୍ଧ ରହିଥାଏ, ଏଣୁ ସେ କାରଣ ଓ ସ୍ଥୂଳ ଉଭୟ ରୂପଯୁକ୍ତ ଅଟନ୍ତି । ଏହିଭଳି 'ଉ' ଆଡକୁ ମାନସିକ ସୃଷ୍ଟିର ଅଧିଷ୍ଠାତା ତୈଜସରୂପ ଦ୍ୱିତୀୟ ପାଦର ସମାନତା କାରଣରୁ 'ଉ' ହିଁ ପୂର୍ଣ୍ଣବ୍ରହ୍ମ ପରମାତ୍ମାଙ୍କର ଦ୍ୱିତୀୟ ପାଦ ଅଟେ । ଯେଉଁ ମନୁଷ୍ୟ ଏହି ଭଳି 'ଉ' ଓ ତେଜୋମୟ ସୂକ୍ଷ୍ମ ତତ୍ତ୍ୱକୁ ଭଲଭାବରେ ପ୍ରତ୍ୟକ୍ଷ କରିନେଇଥାନ୍ତି, ସେ ଜ୍ଞାନର ପରମ୍ପରାକୁ ଉନ୍ନିତ ହୋଇଥାନ୍ତି । ଜ୍ଞାନର ପରମ୍ପରାକୁ ତାହା ଉନ୍ନତ କରାଇଥାଏ, ତାକୁ ବୃଦ୍ଧି କରାଇଥାଏ ତଥା ସର୍ବତ୍ର ସମଭାବ ହୋଇଥାଏ । କାରଣ ଜଗତ୍‌ର ସୂକ୍ଷ୍ମ ତତ୍ତ୍ୱକୁ ବୁଝି ପାରିଥିବା କାରଣରୁ, ତାହାର ବାସ୍ତବିକ ରହସ୍ୟ ବୋଧ ହୋଇଯିବାରୁ ତାଙ୍କର ବିଷମତା ଦୂର ହୋଇଯାଇଥାଏ । ଫଳରେ ତାଙ୍କଠାରୁ ଉତ୍ପନ୍ନ ସନ୍ତାନ ଏପରି କେହି ହୋଇନଥାନ୍ତି, ଯାହାଙ୍କର ହିରଣ୍ୟଗର୍ଭରୂପ ପରମେଶ୍ୱରଙ୍କ ଉପରୋକ୍ତ ରହସ୍ୟ ଜ୍ଞାନ ହୋଇ ନ ଥାଏ ।। ୧୦ ।।

**ସୁଷୁପ୍ତସ୍ଥାନଃ ପ୍ରାଜ୍ଞୋ ମକାରସ୍ତୃତୀୟା ମାତ୍ରା ମିତେରପୀତେର୍ବା ମିନୋତି ହ ବା ଇଦଂ ସର୍ବମପୀତିଶ୍ଚ ଭବତି ଯ ଏବଂ ବେଦ ।।୧୧।।**

**ମନ୍ତ୍ରାର୍ଥ :** ଓଁ କାରର ତୃତୀୟ ମାତ୍ରା 'ମ' ହିଁ ମାପକାରୀ/ଜାଣିବାଯୋଗ୍ୟ ହୋଇଥିବା କାରଣରୁ ଓ ବିଲୀନକାରୀ ହୋଇଥିବାରୁ ସୁଷୁପ୍ତି ସଦୃଶ କାରଣରେ ବିଲୀନ ଜଗତ୍ ଯାହାଙ୍କର ଶରୀର, ପ୍ରାଜ୍ଞ ନାମକ ତୃତୀୟ ପାଦ ଭାବେ ଯେ ବିଖ୍ୟାତ ସେ ଅବଶ୍ୟ ଏହି ସମ୍ପୂର୍ଣ୍ଣ କାରଣ ଜଗତ୍‌କୁ ମାପି

ନେଇଥାନ୍ତି ଅର୍ଥାତ୍ କଳନାକରି ନେଇଥାନ୍ତି ଏପରିକି ସମସ୍ତଙ୍କୁ ନିଜ ମଧ୍ୟରେ ବିଲୀନକାରୀ ହୋଇଯାଇଥାନ୍ତି ।

**ସାମାନ୍ୟ ବ୍ୟାଖ୍ୟା–** ପରମାତ୍ମା ନାମାତ୍ମକ ଓଁକାରର ଯେଉଁ ତୃତୀୟ ମାତ୍ରା 'ମ', ତାହା 'ମା' ଧାତୁରୁ ନିର୍ମିତ । 'ମା'ଧାତୁର ଅର୍ଥ ମାପିବା ଅର୍ଥାତ୍ କଳନା କରିବା ଅଟେ । ଏହା ଓଁ କାରର ଅନ୍ତିମ ମାତ୍ରା ଅଟେ 'ଅ', 'ଉ' ପରେ ଉଚ୍ଚାରିତ ହୋଇଥାଏ– ଏହି କାରଣରୁ ଦୁହିଁଙ୍କର କଳନା କରାଯାଇପାରିବ । ଏଣୁ ଏହା ତାଙ୍କର ଜାଣିବା ଉଚିତ । ତଥା 'ମ'ର ଉଚ୍ଚାରଣ କରିବା ମାତ୍ରେ ମୁଖ ବନ୍ଦ ହୋଇଯାଏ । 'ଅ' ଓ 'ଉ' ଦୁହେଁ ସେଥିରେ ବିଲୀନ ହୋଇଯାଆନ୍ତି । ଅତଃ ତାହା ସେହି ଦୁଇମାତ୍ରାକୁ ଅନ୍ତଃକାଳରେ ବିଲୀନକାରୀ ହୋଇଥାଏ । ଏହି କାରଣରୁ ସୁଷୁପ୍ତ ସ୍ଥାନୀୟ କାରଣ–ଜଗତ୍‌ର ଅଧିଷ୍ଠାତା ପ୍ରାଜ୍ଞ ମଧ୍ୟ ସର୍ବଜ୍ଞ ଅଟନ୍ତି । ସ୍ଥୂଳ, ସୂକ୍ଷ୍ମ ଓ କାରଣ– ଏହି ତିନି ଅବସ୍ଥାରେ ସ୍ଥିତ ଜଗତ୍‌ର ଜ୍ଞାତା ଅଟନ୍ତି । କାରଣ ଜଗତ୍‌ରେ ସ୍ଥୂଳ ଓ ସୂକ୍ଷ୍ମର ଉତ୍ପତ୍ତି ହୋଇଥାଏ ଓ ସେଥିରେ ତାଙ୍କର ଲୟ ମଧ୍ୟ ହୋଇଥାଏ । ଏହିଭଳି 'ମ' ଆଡକୁ କାରଣ–ଜଗତ୍‌ର ଅଧିଷ୍ଠାତା ପ୍ରାଜ୍ଞ ନାମକ ତୃତୀୟ ପାଦର ସମତା ହୋଇଥିବାରୁ 'ମ'ରୂପ ତୃତୀୟ ମାତ୍ରାହିଁ ପୂର୍ଣ୍ଣ ବ୍ରହ୍ମଙ୍କ ତୃତୀୟ ପାଦ ଅଟେ । ଯେଉଁ ମନୁଷ୍ୟ ଏହି ପ୍ରକାର 'ମ' ଓ 'ପ୍ରାଜ୍ଞ' ସ୍ୱରୂପ ପରମେଶ୍ୱରଙ୍କ ଏକତାକୁ ଜାଣିଥାଏ– ସେ ଏହି ରହସ୍ୟକୁ ବୁଝି 'ଓଁ' କାର ସ୍ମରଣ ଦ୍ୱାରା ପରମେଶ୍ୱରଙ୍କ ଚିନ୍ତନ କରିଥାଏ, ସେ ଏହି ମୂଳ ସହିତ ସମ୍ପୂର୍ଣ୍ଣ ଜଗତ୍‌କୁ ଭଲଭାବରେ ଜାଣି ନେଇଥାଏ ଓ ସମସ୍ତଙ୍କୁ ବିଲୀନକାରୀ ମଧ୍ୟ ହୋଇଥାଏ ଅର୍ଥାତ୍ ତାଙ୍କର ବାହ୍ୟ ଦୃଷ୍ଟି ନିବୃତ୍ତ ହୋଇ ଯାଇଥାଏ । ଅତଃ ସେ ସର୍ବତ୍ର ପରବ୍ରହ୍ମ ପରମେଶ୍ୱରଙ୍କୁ ହିଁ ଦେଖିବାକୁ ପାଇଥାନ୍ତି ।।୧୧।।

**ଅମାତ୍ରଶ୍ଚତୁର୍ଥୋଽବ୍ୟବହାର୍ଯ୍ୟଃ ପ୍ରପଞ୍ଚୋପଶମ ଶିବୋଽଦ୍ୱୈତ ଏବମୋଙ୍କାର ଆତ୍ମୈବ ସଂବିଶତ୍ୟାତ୍ମନା–ଽଽତ୍ମାନଂ ଯ ଏବଂ ବେଦ ଯ ଏବଂ ବେଦ।।୧୨ ।।**

**ମନ୍ତ୍ରାର୍ଥ :** ଏହି ଭଳି ମାତ୍ରାରହିତ ପ୍ରଣବ ହିଁ ବ୍ୟବହାରରେ ନ ଆସୁଥିବା ପ୍ରପଞ୍ଚଠାରୁ ଅତୀତ କଲ୍ୟାଣମୟ ଅଦ୍ୱିତୀୟ ପୂର୍ଣ୍ଣ ବ୍ରହ୍ମର ଚତୁର୍ଥ ପାଦ ଅଟେ । ସେହି ଆତ୍ମା ଅବଶ୍ୟ ଆତ୍ମା ଦ୍ୱାରା ପରାତ୍ପର ବ୍ରହ୍ମ ପରମାତ୍ମାରେ ପୂର୍ଣ୍ଣତୟା ପ୍ରବିଷ୍ଟ ହୋଇ ଯାଇଥାଏ । ଯିଏ ଏହି ପ୍ରକାରେ ଜାଣନ୍ତି ସେ ନିର୍ଦ୍ଦିଷ୍ଟ ଭାବରେ ଠିକ୍ ହିଁ ଜାଣନ୍ତି । ସେ ପ୍ରକୃତ ଅବଗତ ହୋଇଥାନ୍ତି ।

**ସାମାନ୍ୟ ବ୍ୟାଖ୍ୟା–** ପରବ୍ରହ୍ମ ପରମାତ୍ମାଙ୍କ ନାମାତ୍ମକ ଓଁକାରର ଯେଉଁ

ମାତ୍ରାରହିତ, ଅକଥନୀୟ ନିରାକାର ସ୍ୱରୂପ ରହିଛି, ତାହା ମନ-ବାଣୀର ଅବିଷୟ ହେବାରୁ ବ୍ୟବହାର ଅଯୋଗ୍ୟ, ପ୍ରପଞ୍ଚାତୀତ, କଲ୍ୟାଣମୟ, ଅଦ୍ୱିତୀୟ, ନିର୍ଗୁଣ ନିରାକାରରୂପ ଚ଼ତୁର୍ଥ ପାଦ ଅଟେ । ଭାବ ହେଉଛି, ଯେଉଁଭଳି ତିନି ମାତ୍ରାର ପ୍ରଥମ ବର୍ଣ୍ଣିତ ତିନି ପାଦ ସହ ସମତା ଅଛି ସେହିଭଳି ଓଁ କାରର ନିରାକାର ସ୍ୱରୂପର ପରବ୍ରହ୍ମ ପରମାତ୍ମାଙ୍କ ନିର୍ଗୁଣ ନିରାକାର ନିର୍ବିଶେଷରୂପ ଚ଼ତୁର୍ଥ ପାଦ ସହ ସମତା ରହିଛି । ଯେଉଁ ମନୁଷ୍ୟ ଏହି ପ୍ରକାରେ ଓଁକାର ଓ ପରବ୍ରହ୍ମ ପରମାତ୍ମାଙ୍କର ଅର୍ଥାତ୍ ନାମ ଓ ନାମୀ ଏକତାର ରହସ୍ୟକୁ ବୁଝି ପରବ୍ରହ୍ମ ପରମାତ୍ମାଙ୍କୁ ପାଇବା ପାଇଁ ତାଙ୍କ ନାମ ଜପର ଅବଲମ୍ବନକରି ତତ୍ପରତାପୂର୍ବକ ସାଧନ କରିଥାଏ, ସେ ନିଃସନ୍ଦେହରେ ଆତ୍ମାରୁ ଆତ୍ମାରେ ଅର୍ଥାତ୍ ପରାତ୍ପର ପରବ୍ରହ୍ମ ପରମାତ୍ମାଙ୍କ ଠାରେ ପ୍ରବିଷ୍ଟ ହୋଇ ଯାଇଥାଏ ।

ପରବ୍ରହ୍ମ ପରମାତ୍ମା ଓ ତାଙ୍କ ନାମର ମହିମା ଅପାର । ଏହାକୁ କେହି ପାର କରି ପାରନ୍ତି ନାହିଁ । ଏହି ପ୍ରକରଣରେ ସେହି ଅସୀମ ପୂର୍ଣ୍ଣବ୍ରହ୍ମ ପରମାତ୍ମାଙ୍କ ଚ଼ାରିପାଦର କଳ୍ପନା ତାଙ୍କର ସ୍ଥୂଳ, ସୂକ୍ଷ୍ମ ଓ କାରଣ- ଏହି ତିନି ସଗୁଣ ରୂପରେ ଓ ନିର୍ଗୁଣ ନିରାକାର ରୂପରେ ଏକତାକୁ ଦେଖାଇବା ପାଇଁ ପୁଣି ନାମ ଓ ନାମୀ ସବୁ ଦୃଷ୍ଟିରୁ ଏକ ପ୍ରମାଣ କରିବା ପାଇଁ ତାଙ୍କର ସର୍ବଭବନ ସାମର୍ଥ୍ୟରୂପ ଯେଉଁ ଅଚ଼ିନ୍ତ୍ୟ ଶକ୍ତି ଅଛି, ତାହା ତାଙ୍କଠାରୁ ସର୍ବଦା ଅଭିନ୍ନ ଅଟେ, ଏହି ଭାବ ଦେଖେଇବାକୁ ଏଭଳି ବର୍ଣ୍ଣନା କରାଯାଇଛି ।

ଯିଏ ଏଭଳି ଜାଣନ୍ତି ଏହି ବାକ୍ୟକୁ ଦୁଇଥର କହିବାରୁ ଉପନିଷଦ ସମାପ୍ତି ସୂଚ଼ିତ ହେଉଛି ।।। ୧୨ ।।



# ।। ପୁନଃ ଶାନ୍ତିପାଠ ।।

ଓଁ ଭଦ୍ରଂ କର୍ଣ୍ଣେଭିଃ ଶୃଣୁୟାମ ଦେବା,
ଭଦ୍ରଂ ପଶ୍ୟେମାକ୍ଷଭିର୍ଯଜତ୍ରାଃ ।
ସ୍ଥିରୈରଙ୍ଗୈ ସ୍ତୁଷ୍ଟୁବାଂସସ୍ତନୂଭିର୍ବ୍ୟଶେମ
ଦେବହିତଂ ଦଦାୟୁଃ ।।

ସ୍ୱସ୍ତି ନ ଇନ୍ଦ୍ରୋ ବୃଦ୍ଧଶ୍ରବାଃ
ସ୍ୱସ୍ତିନଃ ପୂଷା ବିଶ୍ୱବେଦାଃ ।
ସ୍ୱସ୍ଥି ନସ୍ତାର୍କ୍ଷ୍ୟୋ ଅରିଷ୍ଟନେମିଃ
ସ୍ୱସ୍ଥି ନୋ ବୃହସ୍ପତିର୍ଦଧାତୁ ।।
ଓଁ ଶାନ୍ତିଃ ! ଶାନ୍ତିଃ ! ଶାନ୍ତିଃ !!!

ମନ୍ତ୍ରାର୍ଥ : ହେ ଦେବଗଣ ! ଆମେ ଭଗବାନଙ୍କ ଆରାଧନା କରି, କାନରେ କଲ୍ୟାଣମୟ ବଚ଼ନ ଶୁଣି, ନେତ୍ର ସାହାଯ୍ୟରେ କଲ୍ୟାଣ ଦର୍ଶନକରି, ସୁଦୃଢ଼ ଅଙ୍ଗ/ଶରୀର ଦ୍ୱାରା ଭଗବାନଙ୍କ ସ୍ତୁତିପୂର୍ବକ ଯେଉଁ ଆୟୁ ଆରାଧଦେବ ପରମାତ୍ମାଙ୍କ କାମରେ ଆସିପାରିବ ତାକୁ ହିଁ ଉପଭୋଗ କରିବୁ । ସର୍ବତ୍ର ପ୍ରଚ଼ାରିତ ଯଶବାନ ଇନ୍ଦ୍ର ଆମପାଇଁ କଲ୍ୟାଣ ପୋଷଣ କରନ୍ତୁ । ଅରିଷ୍ଟ ଦୂରକାରୀ ଚ଼କ୍ର ସଦୃଶ ଶକ୍ତିଶାଳୀ ଗରୁଡ ଦେବ ଆମପାଇଁ କଲ୍ୟାଣ ପୋଷଣ କରନ୍ତୁ । ହେ ପରମାତ୍ମନ୍ ! ଆମର ତ୍ରିବିଧ ତାପର ଶାନ୍ତି ହେଉ ।।



# ମାଣ୍ଡୂକ୍ୟୋପନିଷଦର ସାରାଂଶ

କୌଣସି ଶବ୍ଦ ଓଁ–କାର ପରିସର ବାହାରେ ନାହିଁ, ସବୁ ପ୍ରକାର ଶବ୍ଦ ସେଇ ଓଁ–କାର ମଧ୍ୟରେ ଅଭିନ୍ନ ଭାବରେ ପ୍ରତିଷ୍ଠିତ । ଯେମିତି ଅଦୃଷ୍ଟ ବ୍ରହ୍ମ ଦୃଷ୍ଟ ହେବାପାଇଁ ଆତ୍ମା ରୂପରେ ନିଜକୁ ପ୍ରକାଶ କରିଥାନ୍ତି ।

ବିଶ୍ୱ, ତୈଜସ ଓ ପ୍ରଜ୍ଞା ପରସ୍ପରଠାରୁ ଅଲଗା ମନେ ହେଉଥିବା କେତୋଟି ତତ୍ତ୍ୱ ମାତ୍ର, ଯାହାକୁ ଆତ୍ମାରେ ଆରୋପ କରାଯାଇଛି–ଅର୍ଥାତ୍ ମଣିଷର ଜାଗ୍ରତ, ସ୍ୱପ୍ନ ଓ ସୁଷୁପ୍ତି ଅବସ୍ଥା ଦ୍ୱାରା ଆତ୍ମା ପ୍ରଭାବିତ ନ ହୋଇ ନିର୍ବିକାର ହୋଇ ରହିଥାଏ । ଏହି ଆତ୍ମା ଓ ମଣିଷ ଯାହାକୁ 'ମୁଁ' ବୋଲି କହେ, ସେହି ଉଭୟ ଏକ ଅଟନ୍ତି । ଗୋଟିଏ ମାଛ ଯେପରି ନଦୀର ଉଭୟ କୂଳପ୍ରତି ଦୃଷ୍ଟି ନଦେଇ କେବଳ ଜଳଭାଗରେ ସନ୍ତରଣ କରୁଥାଏ, ଏହି 'ମୁଁ' ବା ଆତ୍ମାର ଅବସ୍ଥା ମଧ୍ୟ ସେଇପରି । ସୁଷୁପ୍ତି ଅବସ୍ଥାରେ ବାସନାଗୁଡିକ ଜୀବନ୍ତ ଥିଲେ ମଧ୍ୟ ନିଶ୍ଚେଷ୍ଟ(ଚେଷ୍ଟାଶୂନ୍ୟ) ଥାଆନ୍ତି । ସେଗୁଡିକର କ୍ରିୟାଶୀଳତା ଲୁପ୍ତ ହୋଇଯାଇଥାଏ । ସ୍ୱପ୍ନରେ ମଣିଷ ସେଇ ବାସନାଗୁଡିକୁ ଅନୁସରଣ କରି ବାସନା–ତୃପ୍ତିର ଆନନ୍ଦ ପାଇଥାଏ । ଇନ୍ଦ୍ରିୟ ପ୍ରଧାନ ଜଗତ୍ ପ୍ରତି ମଣିଷ ଯେତେ ଆକର୍ଷଣ ଓ ଆସକ୍ତି ଅନୁଭବ କରିଥାଏ, ସେଗୁଡିକ ତା'ର ଜାଗ୍ରତ ଓ ସ୍ୱପ୍ନ ଅବସ୍ଥାରେ ଜାତ ହୋଇଥାଏ । ମନ ସର୍ବଦା ଚଞ୍ଚଳ ଥିବାରୁ ଏହି ମନର ଉର୍ବର ଭୂମିରେ ବାସନାଗୁଡିକ ସହଜରେ ବଢ଼ିଉଠନ୍ତି ଓ ଖୁବ୍ ଦୃଢ଼ମୂଳ ବୃକ୍ଷରେ ପରିଣତ ହୁଅନ୍ତି । ପ୍ରକୃତରେ ଚଞ୍ଚଳ ମନ ହିଁ ସକଳ ସୃଷ୍ଟିର ମୂଳ କାରଣ ।

ଏହି ତିନୋଟି ଅବସ୍ଥା ଭିନ୍ନ ଅବଶ୍ୟ ଆଉ ଏକ ଅବସ୍ଥା ରହିଛି, ଯାହାର ନାମ ତୂରୀୟାବସ୍ଥା । ଏହି ଅବସ୍ଥାକୁ ଭାଷାରେ ବର୍ଣ୍ଣନା କରି ହେବନାହିଁ କିମ୍ବା ମନଦ୍ୱାରା ମଧ୍ୟ କଳ୍ପନା କରିହେବ ନାହିଁ । ଏହାକୁ ବୁଦ୍ଧି ଧରି ପାରେନାହିଁ ମନ କଳି ପାରେନାହିଁ, ସେହି ଅନୁଭୂତିକୁ ସତ୍ୟଂ ଶିବଂ ଅଦ୍ୱୈତମ୍ ବୋଲି ବଡ଼ କୁଣ୍ଠିତ ଭାବରେ ପ୍ରକାଶ କରାଯାଇଥାଏ । ଏହା ପ୍ରଶାନ୍ତି, ଏହା ବିଭୁକୃପା, ଏହା ଏକତ୍ୱବୋଧ । ଏହି ଅବସ୍ଥାରେ ମନର ତରଙ୍ଗ ସବୁ ଏପରି ଶାନ୍ତ ହୋଇଯାଇଥାନ୍ତି ଯେ ମନର ଅସ୍ତିତ୍ୱ ମଧ୍ୟ ରହେନାହିଁ । ଏହା ମନର ପରାଜୟ ଅମନସ୍କ ଅବସ୍ଥା । ଗଭୀର ସୁଷୁପ୍ତି ଅବସ୍ଥାରେ ମନ ସୁପ୍ତ ନ ଥାଏ, ସ୍ୱପ୍ନ ଅବସ୍ଥାରେ ମନ ଅସ୍ଥିର ଓ ଚଞ୍ଚଳ ଏବଂ ଜାଗ୍ରତ

ଅବସ୍ଥାରେ ତାହା ସକଳ କର୍ମର ପ୍ରେରକ ହୋଇ ନିଜେ ସବୁବେଳେ କର୍ମତନର ଥାଏ । ଏହି ତିନୋଟିଯାକ ଅବସ୍ଥାରେ ସତ୍ୟ ଅଜଣା ଥାଏ । ସଂସାର ଜନ୍ମ ହୁଏନା କି ମରେନା । ଏହା ତୁମ ଅଜ୍ଞାନ ସହ ଆତ୍ମପ୍ରକାଶ କରେ ଓ ଜ୍ଞାନ ଜାଗ୍ରତ ହେଲେ ଅନ୍ତର୍ହିତ ହୋଇଯାଏ ।

ଓଁ କାରର ଅ-ଉ-ମ ଧ୍ୱନିତ୍ରୟ ଯଥାକ୍ରମେ ଜାଗ୍ରତ, ସ୍ୱପ୍ନ ଓ ସୁଷୁପ୍ତି ଅବସ୍ଥାରେ ବିଶ୍ୱ, ତୈଜସ୍ ଓ ପ୍ରଜ୍ଞା ବିଭାଗ ଗୁଡିକର ପ୍ରତୀକ ଭାବରେ ବିଦ୍ୟମାନ । ଏହାର ସାଧନ କାଳରେ ପ୍ରତ୍ୟେକଙ୍କର ଗୋଟିଏ ଗୋଟିଏ ନିର୍ଦ୍ଦିଷ୍ଟ ଭୂମିକା ପରିଦୃଷ୍ଟ ହୁଏ । ପ୍ରଥମ ଧ୍ୱନିଟି ଉପାସନା ବୁଝାଏ । ଏହି ଉପାସନା ବଳରେ ମଣିଷର ସମସ୍ତ କାମନା ପୂର୍ଣ୍ଣ ହୋଇଥାଏ । ଦ୍ୱିତୀୟ ଧ୍ୱନିରେ ମନକୁ ନିବିଷ୍ଟ କଲେ ଜ୍ଞାନ ବୃଦ୍ଧି ହୁଏ ଏବଂ ଉପାସନା ସମୟରେ ତୃତୀୟ ଧ୍ୱନି 'ମ' ର ବିଶେଷ ଅନୁଶୀଳନ କଲେ ଆତ୍ମା ପରମାତ୍ମାଙ୍କ ସହ ମିଳିତ ହୁଏ । ପ୍ରଣବର ଉପାସକ ଜଗତ୍ ଓ ସୃଷ୍ଟିର ରହସ୍ୟ ସମ୍ବନ୍ଧରେ ମଧ୍ୟ ଜ୍ଞାନଲାଭ କରିଥାଏ । ସେଥିପାଇଁ ପ୍ରଣବର ଉପାସକ ସମସ୍ତଙ୍କର ନମସ୍ୟ ।

'ଅ-ଉ-ମ' ଧ୍ୱନିତ୍ରୟ ଗୋଟିକ ପରେ ଗୋଟିଏ ଉଚ୍ଚାରିତ ହୋଇ ଶେଷରେ 'ଅ'- ମନ୍ତ୍ର ଅକ୍ଷର ଧ୍ୱନିରେ ପରିଣତ ହୋଇ କ୍ରମଶଃ ନିର୍ବାକ୍ ନୀରବତା ମଧ୍ୟରେ ମିଳାଇଯାଏ । ଯାହାକି ଶାନ୍ତଂ ଶିବଂ ଅଦ୍ୱୈତମ୍‌ର ପ୍ରତୀକ । ତାହାହିଁ ବ୍ୟକ୍ତିସତ୍ତା ନିଜର ନାମ ଓ ରୂପରେ ଅନେକତା ଓ ଅଳୀକତାକୁ ପାଶୋରି ମହାସତ୍ତା ମଧ୍ୟରେ ବିଲୀନ ହୋଇଯିବାର ପ୍ରତୀକ । ମାତ୍ର ତାହା ସବୁକିଛି ନୁହେଁ । ଏହି ଉପନିଷଦରେ ପ୍ରଣବକୁ ସୃଷ୍ଟିର କାରଣ ବୋଲି କୁହାଯାଏ । ଏହା ମଣିଷର ସର୍ବଦୁଃଖହର ବୋଲି ପ୍ରଶଂସିତ ମଧ୍ୟ ହୋଇଥାଏ । କାହିଁକି ନାଁ ଯେଉଁ ବ୍ୟକ୍ତି ପ୍ରଣବର ଏହି ତାତ୍ପର୍ଯ୍ୟ ବିଷୟରେ ସଚେତନରହି ସର୍ବଦା ପ୍ରଣବୋପାସନା କରେ, ସେ ସକଳ ପ୍ରତୀତି ଅନ୍ତରାଳରେ ଥିବା ପ୍ରକୃତ ସତ୍ୟ ପରମାତ୍ମାଙ୍କ ପ୍ରତି ନିଶ୍ଚିତ ଓ ଅଭ୍ରାନ୍ତ ଭାବରେ ଆଗେଇଚାଲେ ।

ଏହି ଉପନିଷଦର ପ୍ରଥମ ପ୍ରକରଣରେ ଆତ୍ମାର ଅଦ୍ୱୈତ ଅନନ୍ୟତାକୁ ମୋଟାମୋଟି ଭାବରେ ଉପସ୍ଥାପିତ କରାଯାଇଛି ଏବଂ ଦ୍ୱିତୀୟ ପ୍ରକରଣରେ ଜଗତ୍ ଓ ଈଶ୍ୱର ଦୁଇଟି ବିଭିନ୍ନ ସତ୍ତା ବୋଲି ଯାହା କୁହାଯାଏ, ତାକୁ ମଧ୍ୟ ଖଣ୍ଡନ କରାଯାଇଛି । ଅଦ୍ୱୈତ ବୋଲି କୁହାଯାଉଥିବା ପ୍ରକରଣଟିରେ ଅଦ୍ୱୈତ ତତ୍ତ୍ୱକୁ ନାନା ଯୁକ୍ତି ଓ ପ୍ରମାଣ ସାହାଯ୍ୟରେ ପ୍ରତିଷ୍ଠା କରାଯାଇଛି । ପ୍ରଥମେ ଜଗତ୍ ସୁପ୍ତ, ଅପ୍ରକାଶ୍ୟ ଥିଲା, ପରେ ବ୍ରହ୍ମଙ୍କଠାରୁ ପ୍ରକାଶିତ ଓ ସୃଷ୍ଟି ହେଲା, ତେଣୁ ଜଗତ୍‌ରୁ ଜାତ ଏହି ବ୍ରହ୍ମ । ଏହି ଜାତ ବ୍ରହ୍ମଙ୍କ ଉପାସନା କଲେ ଉପାସକ ମୂଳ କାରଣ, ଆଦି

ବ୍ରହ୍ମଙ୍କଠାରେ ପହଞ୍ଚି ପାରେନାହିଁ କି ମୁକ୍ତି ପାଇ ପାରେନାହିଁ । ମାତ୍ର ଏଇ ଉପନିଷଦ୍ ବ୍ରହ୍ମଙ୍କର ଯେଉଁ ସ୍ୱରୂପ ଉଦ୍‌ଘାଟନ କରିଥାଏ, ତାହା ପରିଣତି ନୁହେଁ, ତାହା ମୂଳ କାରଣ । ବ୍ରହ୍ମ ଜାତ ହୁଅନ୍ତି ନାହିଁ କିମ୍ବା ସେ ସଂକ୍ଷିପ୍ତ ନୁହଁନ୍ତି, କି ସେ ବହୁ ଭାବରେ ବିଭକ୍ତ ହୁଅନ୍ତି ନାହିଁ ।

ଆତ୍ମା ପ୍ରକାଶ ପରି ସର୍ବବ୍ୟାପୀ । ଆକାଶ ଘଡି ଭିତରେ ବା ଘର ଭିତରେ ସଂକ୍ଷିପ୍ତ ହୋଇଥିବା ପରି ମନେହୋଇପାରେ, ମାତ୍ର ସେ ସଂକ୍ଷିପ୍ତତାରେ, ସସୀମତାରେ ସତ୍ୟ ନାହିଁ । ଦେହ ଗୋଟିଏ ମାଟି ଘଡି ପରି  ଯାହା ଅନନ୍ତ ଆକାଶ ସଦୃଶ ଆତ୍ମାକୁ ଗୋଟିଏ ରୂପ ଦେବା ନିମନ୍ତେ ସୀମାବଦ୍ଧ କରି ରଖିବାର ବୋଧ ସୃଷ୍ଟି କରିଥାଏ । ଘଡି ଭିତରେ ଥିବା ଆକାଶ ଓ ଘଡିବାହାରେ ପରିବ୍ୟାପ୍ତ ଆକାଶ ମଧ୍ୟରେ କିଛି ହେଲେ ତଫାତ୍ ନାହିଁ, ସୀମାବଦ୍ଧ କରୁଥିବା ପଦାର୍ଥଟିକୁ ଅର୍ଥାତ୍ ଘଡିକୁ କାଢ଼ିନିଅ, ତା'ପରେ ସେମାନଙ୍କ ମଧ୍ୟରେ ଥିବା ଐକ୍ୟଟି ଧରା ପଡିଯିବ । ଦେହର ବିନାଶ ପରେ ଜୀବ ପରମାତ୍ମାଙ୍କଠାରେ ଲୀନ ହୋଇଥାଏ । ଦେହର ରୂପ-ଅରୂପ ଆତ୍ମାଠାରେ ଆରୋପିତ ହୋଇ ଆତ୍ମାକୁ ଅନ୍ୟ ଭାବରେ ପ୍ରକାଶିତ କରିଥାଏ । ଜୀବକୁ ପରମାତ୍ମାଙ୍କର ଅବୟବ ବା ବିକାର ବୋଲି କହିବା ଆଦୌ ଠିକ୍ ନୁହେଁ ।

ଜୀବର ଜନ୍ମ ଓ ମୃତ୍ୟୁ, ମହାଶୂନ୍ୟରେ ଗୋଟିଏ ଲୋକରୁ ଅନ୍ୟଲୋକ ଗମନ ସବୁ ଅସତ୍ୟ । ଏହା ସତ୍ୟ ନୁହେଁ, ପ୍ରତୀତି ମାତ୍ର । ଭଲକରି ଚିନ୍ତାକଲେ ଜାଣିହେବ ଦ୍ୱୈତ ଅଦ୍ୱୈତର ବିରୋଧୀ ନୁହେଁ । ବିରୋଧ ହେଉଛି, ବିଭିନ୍ନ ଦ୍ୱୈତଭାବାପନ୍ନ ଧର୍ମ ଓ ମତବାଦରେ । ଅଦ୍ୱୈତବାଦୀ ନିମନ୍ତେ ସବୁକିଛି ତ ଏକ ପରବ୍ରହ୍ମ ତା' ପାଇଁ ଆଉ ବିରୋଧ ଆସିବ କୁଆଡୁ ? ଦ୍ୱୈତବାଦୀ ସବୁବେଳେ ଆସକ୍ତି, ଗର୍ବ ଅସୂୟା ଆଦିର ପରିବେଶ ମଧ୍ୟରେ ବାସ କରେ । କାରଣ ଦୁଇଟି ଜିନିଷ ସ୍ୱୀକାର କଲାମାତ୍ରେ ଏ ସବୁ ବିରୋଧ, ଆସକ୍ତି ଓ ପ୍ରବୃତ୍ତି ଆପେ ଆସିଯାଏ । ଏଗୁଡିକ ଦ୍ୱୈତଭାବନାର ସ୍ୱାଭାବିକ ପରିଣତି ମାତ୍ର ! ଅଦ୍ୱୈତ ପରମସତ୍ୟ, ଦ୍ୱୈତ ଗୋଟାଏ ମାନସିକ ଅବସ୍ଥା ମାତ୍ର, ତେଣୁ ଦ୍ୱୈତବାଦ ତୁମକୁ କେବଳ ମନର ଶେଷ ସୀମାଯାଏ ନେଇଯାଇପାରିବ । ସୁଷୁପ୍ତି କିମ୍ବା ସମାଧି ଅବସ୍ଥାରେ 'ଦ୍ୱୈତ'ର ସ୍ୱୀକୃତି ନଥାଏ । ଅବିଦ୍ୟାର ପ୍ରଭାବ ବେଶୀ ହେଲେ ବିରୋଧ ନିଶ୍ଚୟ ଅଧିକ ହେବ, ମାତ୍ର ବିଦ୍ୟା ପ୍ରକଟିତ ହେଲେ ମଣିଷ ପ୍ରକୃତ ଐକ୍ୟର ଅନୁଭୂତି ଲାଭ କରିଥାଏ । ତେଣୁ ବସ୍ତୁତଃ, ଦ୍ୱୈତ-ଅଦ୍ୱୈତ ମଧ୍ୟରେ କିଛି ବିରୋଧ ବା ବିବାଦ ନାହିଁ । ଦଉଡିଟି ହିଁ  ସର୍ପଭ୍ରମର ମୂଳକାରଣ- ସେହିପରି ବ୍ରହ୍ମହିଁ  ଜଗତ୍ ବୋଲାଉଥିବା ଭ୍ରମ ବା ମାୟାର ଜନକ ।

ଜଗତ୍ ପରି ପରମାତ୍ମାଙ୍କର ମଧ୍ୟ ଜନ୍ମ ଅଛି ବୋଲି କହିବା ଏକାବେଳକେ ଭୁଲ୍-

ମୂଳ ସ୍ୱଭାବର ପରିବର୍ତ୍ତନ ହେବା ସମ୍ଭବ କି ? ବିବିଧତା ପରମାତ୍ମାତତ୍ତ୍ୱର ସ୍ୱଭାବ ନୁହେଁ । ଏକଥା ଶ୍ରୁତି ବହୁ ଉପଲକ୍ଷ ଦେଇ କହିଛନ୍ତି । ଯେଉଁମାନେ ପରମାତ୍ମାକୁ ଏକାଧିକ ବୋଲି କହନ୍ତି, ସେମାନଙ୍କୁ ଶ୍ରୁତି ନିନ୍ଦା ମଧ କରିଛନ୍ତି । ମନର ସମଗ୍ରୀ ଅବସ୍ଥାର, ଏପରିକି, ମନୋନାଶର ଯେ ଦ୍ରଷ୍ଟା, ତାଙ୍କୁ ମନ ମଧ୍ୟରେ ପ୍ରତ୍ୟକ୍ଷ କରିହେବ କିପରି ? ସମୟ ଓ ସୀମାର ଅତୀତ ସେଇ ଦ୍ରଷ୍ଟା ହିଁ ଏକମାତ୍ର ଶାଶ୍ୱତ । ଏହାହିଁ ଆତ୍ମ୍ ଚୈତନ୍ୟ, ତାହାହିଁ ଏକମାତ୍ର ସତ୍ୟ । ଆଉ ସବୁ ଛାୟା ପରି ।

ମନକୁ ବିଚାର ଓ ବୈରାଗ୍ୟ ବଳରେ ଇନ୍ଦ୍ରିୟପ୍ରଧାନ ଜଗତ୍‌ଠାରୁ ଦୂରକୁ ନେଇଗଲେ ତୁମେ ଅମନୋଭାବ ବା ମନୋନାଶର ଅବସ୍ଥା ଉପଲବ୍‌ଧି କରିପାରିବ । ମାତ୍ର ଏଥିରେ ତୁମକୁ ଆଉ ଗୋଟିଏ କଥା ମନେରଖିବାକୁ ପଡିବ– ପ୍ରକୃତିର ଏହି ଇନ୍ଦ୍ରିୟ ଗ୍ରାହ୍ୟ ଜଗତ୍‌ର ସ୍ୱଭାବ ବିଷୟରେ ଭଲ ରୂପେ ନ ଜାଣି ଯଦି ମନକୁ ନିଗ୍ରହ କରିବାକୁ ଚେଷ୍ଟାକର ତେବେ ତାହା ଗୋଟାଏ ବ୍ୟର୍ଥ ପ୍ରୟାସ ହେବ– ଆସକ୍ତି ଛାଡିବ ନାହିଁ କିମ୍ୱା ମନର ଚଞ୍ଚଳତା କଟିବ ନାହିଁ । ଅଳ୍ପ ସୁଯୋଗ ପାଇଲା ମାତ୍ରେ ସେଗୁଡିକ ପୁଣି ମୁଣ୍ଡ ଟେକି ଉଠିବେ ।

ତେଣୁ ସୁଷୁପ୍ତି ସମୟରେ ମନ ଯେମିତି ନୀରବ ଓ ନିଃସ୍ପନ୍ଦ ଥାଏ ତାକୁ ସବୁ ବେଳେ, ଏପରି କି ଜାଗ୍ରତ ଅବସ୍ଥାରେ ମଧ ସେହିପରି ନିରୀହ ଓ ନିଃସ୍ପନ୍ଦ ରଖିବାକୁ ଉଦ୍ୟମ କରିବାକୁ ହେବ । ଇନ୍ଦ୍ରିୟଜାତ ସକଳ ଅନୁଭୂତି ଅଳୀକ ବୋଲି ଯେତେ ବେଳେ ତୁମର ବୋଧ ହୋଇଯିବ, ସେତେ ବେଳେ ମନ ଆଉ ଗୋଟିଏ ବିକ୍ଷୋଭକାରୀ ଶକ୍ତି ହୋଇ ରହିବ ନାହିଁ । ଏହା ଗୋଟିଏ ଶକ୍ତିହୀନ ଅଙ୍ଗ ପରି ନିଷ୍କ୍ରିୟ ହୋଇଯିବ । ମଣିଷ ଯେତେ କ୍ଷୁଧାର୍ତ୍ତ ହେଲେ କ'ଣ କେବେ ବିଷ୍ଠା ଭକ୍ଷଣ କରିବାକୁ ମନ କରିବ ? ଠିକ୍ ସେହିଭଳି ।

ଯେଉଁ ଆତ୍ମା ନିତ୍ୟ–ସ୍ୱୟଂ ପ୍ରକାଶିତ, ନିଦ୍ରା, ଜନ୍ମ, ନାମ ଓ ରୂପରହିତ ଏବଂ ଆତ୍ମା–ଉପଲବ୍ଧି ଶେଷ ଲକ୍ଷ୍ୟ, ତାକୁ ଲାଭକରିବାକୁ ହେଲେ ମନର ବିକାରଗୁଡିକୁ ଅତିକ୍ରମ କରି ଯିବାକୁ ପଡିବ । ବିଚାର ପ୍ରୟୋଗ ନ କରି ମନକୁ ସଂଯତ କରିବାକୁ ଯିବା, କିମ୍ୱା ମଣିଷକୁ ବିଷୟବସ୍ତୁ ଗୁଡିକର ଅନିତ୍ୟତା ବିଷୟରେ ହୃଦବୋଧ କରାଇବାକୁ ଯିବା, ଗୋଟିଏ ଘାସପତ୍ରରେ ସମୁଦ୍ର ପାଣିକୁ ବୋହି ଶୁଖାଇ ଦେବାପାଇଁ ଅଣ୍ଟାଭିଡି ବାହାରିଲାପରି ନିର୍ବୋଧ ଓ ନିଷ୍ଫଳ ପ୍ରୟାସ ମାତ୍ର । ଜଗତ୍ ଗୋଟିଏ ରୂପକଥା (ନାଟ୍ୟ ମଣ୍ଡପ) ବୋଲି ବିଶ୍ୱାସ କଲେ ଯାଇ ତୁମେ ପ୍ରଶାନ୍ତି ଓ ଅଭୟ ଆଦି ଗୁଣ ଗୁଡିକର ଅଧିକାରୀ ହେବାପାଇଁ ଆକାଂକ୍ଷା ପୋଷଣ କରିପାରିବ ।

ପ୍ରତ୍ୟେକ ନବସୃଷ୍ଟି ପଛରେ ସତ୍ ହେଉ ବା ଅସତ୍ ହେଉ, ପ୍ରେରଣାଦାୟକ ଶକ୍ତି

ଭାବରେ ଗୋଟାଏ କିଛି ଉଦ୍ଦେଶ୍ୟ ରହିବା ଉଚିତ ନୁହେଁ କି ? ତେବେ ସୃଷ୍ଟି ହେଲା କହିଲେ ପ୍ରକୃତରେ କ'ଣ ବୁଝାଯାଏ ? କୁହାଯାଏ ଯେ, କାରଣ ବିକାରର ଅଧୀନ ହୋଇ ପରିବର୍ତ୍ତିତ ହୁଏ ଓ କାର୍ଯ୍ୟ ଭାବରେ ରୂପାନ୍ତରିତ ହୁଏ । 'ସତ୍'ର ବିକାର ନ ଥିବାରୁ ସତ୍ ସତ୍ତାଠାରୁ ସୃଷ୍ଟି ହୁଏନା । ଅସତ୍ ତ ମହାଶୂନ୍ୟ, ତେଣୁ ତା'ଠାରୁ ମଧ କିଛି ସୃଷ୍ଟି ହେବା ସମ୍ଭବ ନୁହେଁ । ସତ୍ୟ ଓ ଅସତ୍ୟର ମିଳନ ତ ଚିନ୍ତାର ବାହାରେ । ତେଣୁ ତର୍କ ଦୃଷ୍ଟିରୁ ଦେଖିଲେ କିଛି ହେଲେ ସୃଷ୍ଟି ହେବା ସମ୍ଭବ ନୁହେଁ, କାରଣ କେବେହେଲେ ବିଚାର୍ଯ୍ୟ ହୋଇପାରିବ ନାହିଁ ।

ତୁମେ ଯେତେବେଳେ ନିଆଁ ମନେପକାଅ, ସେତେବେଳେ ତୁମକୁ ଉଷୁମ ଲାଗେନାହିଁ, ହାତରେ ନିଆଁକୁ ଛୁଇଁଲେ ଯାଇ ତୁମକୁ ଗରମ ଲାଗେ । ତେଣୁ ବସ୍ତୁଗତ ଜ୍ଞାନଠାରୁ ବସ୍ତୁଗୁଡିକ ନିଶ୍ଚୟ ତଫାତ୍ । ଜ୍ଞାନ ଗୋଟିଏ କଥା, ବାସ୍ତବ ଅନୁଭୂତି ଆଉ ଗୋଟାଏ କଥା । ପୁଣି ପ୍ରଥମ କାରଣକୁ ଖୋଜିବା ଗୋଟିଏ ଅସମାପ୍ତ ଅଭିଯାନ । କାରଣ ସର୍ପ ଆଦୌ ନ ଥିଲେ ମଧ ରଜ୍ଜୁରେ ତୁମେ ସର୍ପକୁ ଦେଖିଥାଅ ! ଏସବୁ କଳ୍ପନାର କସରତ୍ । ସ୍ୱପ୍ନରେ କୌଣସିଟା ବାସ୍ତବ ନ ହେଲେ ମଧ ତୁମେ ଜୀବନର ସବୁପ୍ରକାର ଅନୁଭୂତି ଅନୁଭବ କରିଥାଅ । ମନର କଳ୍ପନା ଓ ସିଦ୍ଧାନ୍ତ ପାଇଁ ମନ କୌଣସି ଭିତ୍ତି ବା ଯଥାର୍ଥ ବସ୍ତୁଗତ ଅନୁଭୂତି ଦରକାର କରେନାହିଁ । ଯେତେଦିନ ଯାଏ ସତ୍ୟର ଆଲୋକ ମନ ପାଇ ନଥିବ, ସେତେଦିନ ଯାଏ ଅବାସ୍ତବ ଜଗତ୍ ବିଷୟରେ ନାନା ଅବାସ୍ତବ ଦାୟିତ୍ୱଶୂନ୍ୟ କଳ୍ପନା  ମନକୁ ବ୍ୟତିବ୍ୟସ୍ତ କରୁଥିବ । ଯେଉଁମାନେ ଅବିଦ୍ୟା ବା ଅଜ୍ଞାନରେ ବୁଡି ରହିଛନ୍ତି, ମାୟା ବା ଭ୍ରମକୁ ଧରିବସିବା ସେମାନଙ୍କ ପକ୍ଷରେ ଖୁବ୍ ସ୍ୱାଭାବିକ ।

ଏହି ଉପନିଷଦ ଅତ୍ୟନ୍ତ ସ୍ପଷ୍ଟ ଭାବରେ ଘୋଷଣା କରିଛି ଯେ, ସତ୍ କେବେହେଲେ କାର୍ଯ୍ୟ ବା ଅସତ୍‌ର କାରଣ ହୋଇ ନ ପାରେ  । ଗୋଟିଏ ଧୂପକାଠିରୁ ଉଠୁଥିବା କୁଣ୍ଡଳୀକୃତ ଧୂମ ପରି ବାହ୍ୟଜଗତ୍ ହେଉଛି, ଆମ କଳ୍ପନାର ବା ଚିତ୍ତର ସୃଷ୍ଟି । ପ୍ରକୃତରେ ନଥିବା ପଦାର୍ଥକୁ ଅଛି ବୋଲି ଭାବିବା ଗୋଟିଏ ଅଧ୍ୟାସ ବା ଆଭାସ । ଏ ଧାରଣା ବା କଳ୍ପନା ନିମନ୍ତେ ବେଶ୍ ଉର୍ବର ଭୂମି ଯୋଗାଇଥାଏ ଅଜ୍ଞାନ ଅବସ୍ଥା । ଏହି ଭ୍ରମର ପରିଣତି ହେଲା ସୃଷ୍ଟି ଓ ଲୟ- ଏହି ଦୁଇଟି ଗୁଣଥିବା ସ୍ଥାନ ହେଲା ସଂସାର ।

ପରମାତ୍ମା ସର୍ବାତ୍ମସ୍ୱରୂପ ହୋଇଥିବାରୁ ଆତ୍ମାରେ କାର୍ଯ୍ୟ–କାରଣ ବା କାମ–କାମନାପୂର୍ତ୍ତି ଉଠିପାରେନାହିଁ । ଯେ ଆତ୍ମଦର୍ଶନ କରେ, ସେ ଆତ୍ମାମୟ ହୋଇଯାଏ । ମାୟାଜାତ ବୀଜରୁ ଯାହା ଜାତ ହେବ, ତାହା ମାୟାତରୁ । ଉଭୟ ଅବାସ୍ତବ,

ଅଳୀକ । ସେହି କାରଣରୁ ଜୀବର ଜନ୍ମ ଓ ମୃତ୍ୟୁ ଦୁଇଟିଯାକ ମିଛକଥା । ସେ ଦୁଇଟି ଖାଲି ଅର୍ଥହୀନ ଦୁଇଟି ଶବ୍ଦ ମାତ୍ର । ସ୍ୱପ୍ନରେ ଯାହା ଦେଖାଯାଏ, ତାହା ସ୍ୱପ୍ନ ଦେଖିବା ବ୍ୟକ୍ତିଠାରୁ ତଫାତ୍ ନୁହେଁ । ତାହା ସ୍ୱପ୍ନ ଦେଖିବା ବ୍ୟକ୍ତି ଠାରୁ ଅଲଗା ବୋଲି ମନେ ହୋଇପାରେ, ମାତ୍ର ପ୍ରକୃତରେ ତାହା ସ୍ୱପ୍ନ ଦେଖିବା ବ୍ୟକ୍ତିର ଆପଣା ଚେ଼ତନାରୁ ଜାତ ହୋଇଥିବାରୁ ତାଠାରୁ ଅଭିନ୍ନ । ଦ୍ରଷ୍ଟାର ଆରମ୍ଭ ନାହିଁ, କି ଶେଷ ନାହିଁ । ସେ ଦାୟିତ୍ୱ ଓ କର୍ତ୍ତବ୍ୟବୋଧରେ ବନ୍ଧା ନୁହେଁ, ଭଲ ଓ ମନ୍ଦଦ୍ୱାରା ଆବଦ୍ଧ ନୁହେଁ । ଏକଥା ଜାଣିବା ଓ ଏହି ଉପଲବ୍ଧିରେ ପ୍ରତିଷ୍ଠିତ ହେବା ହିଁ ମୁକ୍ତି । ଚି଼ତ୍ତସ୍ପନ୍ଦନ ହିଁ ଉତ୍ପତ୍ତିର କାରଣ ।

ଏକଥା ଚି଼ନ୍ତାକର ଓ ଚେ଼ତନାର ତୁରୀୟ ଅବସ୍ଥାରେ ଉପନୀତ ହୁଅ । ତେବେ ଦେଖିପାରିବ–ନାମ, ରୂପ, ବସ୍ତୁ, ଭାବ ସବୁକିଛି ଏକ ସର୍ବବ୍ୟାପୀ ମହାସତ୍ତା ଆତ୍ମାରେ ନିମଜ୍ଜିତ ହୋଇଯାଉଛି ।

ଏହି ଉପନିଷଦ୍ ସର୍ବଶ୍ରେଷ୍ଠ ତତ୍ତ୍ୱକୁ ସଂକ୍ଷିପ୍ତ ଭାବରେ ଶିକ୍ଷା ଦେଇଥାଏ । କର୍ମ ବା ଅନ୍ୟସବୁ ସହଯୋଗୀ ବିଷୟ ଏ ଉପନିଷଦ୍ ଉତ୍‌ଥାପନ କରନ୍ତି ନାହିଁ । କେବଳ ଆତ୍ମତତ୍ତ୍ୱର ବିଜ୍ଞାନ ହିଁ ଏହି ଉପନିଷଦର ଏକମାତ୍ର ବିଚା଼ରସାପେକ୍ଷ ବସ୍ତୁ ।

